ଓଡ଼ିଶା ଶିକ୍ଷାବିଭାଗୀୟ ଡାଇରେକ୍ଟର ମହୋଦୟଙ୍କ ଦ୍ୱାରା ୨୭।୩।୫୮ ରିଖ
ନେ ହିସାବରେ ଚତୁର୍ଥ ଶ୍ରେଣୀ ପାଇଁ ପାଠ୍ୟପୁସ୍ତକରୂପେ ମନୋନୀତ ।

# ଇତିହାସ ସଞ୍ଚୟ

## ପ୍ରଥମ ଭାଗ

( ଚତୁର୍ଥ ଶ୍ରେଣୀ ନିମିତ୍ତ )

**Historical Reader for Class IV**

*(Written in strict conformity with the instructions issued by the Director of Public Instruction Orissa for Historical Reader)*


ଲେଖକଃ —

**ଶ୍ରୀ କୁଳମଣି ଦାସ**

ରେଭେନସା କଲେଜିଏଟ୍ ସ୍କୁଲ୍; କଟକ



ନୂତନ ସଂସ୍କରଣ

**ଶ୍ରୀ ଉମାଚରଣ ମହାନ୍ତି**

ପ୍ରୋପ୍ରାଇଟର, କଟକ ପବ୍ଲିସିଂ ହାଉସ

ନୟାସଡ଼କ, ପୋ: ଅ: ଚାନ୍ଦନୀଚୌକ

କଟକ

୧୯୫୮


ମୂଲ୍ୟ ୦।୮/-

# ସୂଚୀପତ୍ର

# ଇତିହାସ ସହଚର

## ପ୍ରଥମ ଭାଗ



### ବଣବୁଲା

ସେ ଆଜକୁ ପାଞ୍ଚ ଛଅ ବର୍ଷତଳର କଥା । ସବୁଦିନେ ଗାଆଁରେ ବସି ବସି ଭାରି ବିରକ୍ତ ଲାଗିଲା; ତେଣୁ ମନରେ ଭାବିଲି, ଯାଉଛି କିଛିଦିନ ଅନ୍ୟ ମୂଲକମାନର ବୁଲି ଆସିବି । ଆମ ଦେଶରେ ଅନେକ ସହର, ଗାଆଁ ବୁଲି ଆଗରୁ ଦେଖିଥିଲି । ସେ ଗୁଡ଼ାକ ଆଉ ଦେଖିବି କଅଣ ? ଆମ ପଶ୍ଚିମ ଦିଗରେ ଯେଉଁ ପାହାଡ଼ିଆ ମୂଲକ ଅଛି, ସେ ଆଡ଼େ ଲୋକେ କିପରି ଚଳୁଛନ୍ତି, ତା ଦେଖିବି ବୋଲି ଘରୁ ଏକା ହୋଇ ବାହାରି ପଡ଼ିଲି । ବାଟରେ ସାତ ଦିନ କଟିଗଲା । ଶେଷରେ ଯାଇ ପହଞ୍ଚିଗଲି ଗୋଟିଏ ପାହାଡ଼ିଆ ମୂଲକରେ ।

ଖାଲି ବଣ, ଜଙ୍ଗଲ; ଚାରିଆଡ଼େ ବୁଦା, ବଡ଼, ବଡ଼ ଗଛ, ଲଟା ପୁରି ରହିଛି । ଠାଏ ଠାଏ ତ ସୂର୍ଯ୍ୟକିରଣ ପଡ଼ୁ ନାହିଁ ।

ଅମଅଡ଼ ସବୁ ସେଅଡ଼େ ମାଟି ଉପର ବି ସମାନ ନୁହେ । କେଉଁ-
ଠାରେ ଖାଲ, କେଉଁଠାରେ ଟିପ—ସେ ପାହାଡ଼ିଆ ଭୂଇଁ
କେଉଁଠାରୁ କେଉଁଯାଏ ଲାଗିଛି, ମୁଁ କଳନା କରି ପାରିଲି
ନାହିଁ । ବଣ ଭିତରେ କେତେ ଜୀବ ଯେ ଅଛନ୍ତି, ତା କିଏ
କହିବ ? ବାଘ, ଭାଲୁ, ହରିଣ, ବାର୍ହା, ହାତୀ, ସାପ—
ଅଉ କେତେ ଯେ ଜୀବ ସେଗୁଡ଼ାକଙ୍କ ନାମ ମୁଁ କହି ପାରିବି
ନାହିଁ । ଭାରି ଡର ମାଡ଼ିଲା । କେତେ ବାଟ ଗିବା ପରେ ଗୋଟିଏ
ସ୍ରୋତ ନଈ ଦେଖିଲି । ଏତେବେଳଯାଏ ମୁଁ ସେ ବଣରେ ମଣିଷ
ଦେଖି ନ ଥିଲି । ସେ ନଈକୂଳରେ ଗୋଟାଏ ଗଛମୂଳରେ
ବସିଛି, ସେତିକିବେଳେ ଦେଖିଲି ଗୋଟାଏ ବୁଢ଼ା ସେ ନଈରେ
ଗାଧୋଉଛି । ମଣିଷ ଦେଖି ମୋ ମନରେ ଭାରି ଆନନ୍ଦ ହେଲା ।
ମୁଁ ଧୀରେ ଧୀରେ ସେ ଲୋକ ପାଖକୁ ଗଲି । ବୁଢ଼ା ମୋତେ ଦେଖି
କାବା ହୋଇଗଲା । ମୁଁ ଭାବିଲି, ସେ ବୋଧହୁଏ କେବେ ମୋ
ପରି ମଣିଷ ଦେଖି ନ ଥିଲା । ମୁଁ ବୁଢ଼ାକୁ ମୋ ପାଖକୁ ଡାକିଲି ।
ମୋ କଥା ସେ ବୁଝି ପାରିଲା ନାହିଁ । ହାତରେ ଠାରିଲି, ସେ ପାଖକୁ
ଆସିଲା । ଦେଖିଲି ସେ ବୁଢ଼ା ଲଙ୍ଗଳା, ଲୁଗା ନାହିଁ । ଭାବିଲି, ଏ
ଗୋଟାଏ ଗରିବ ଲୋକ । ତେଣୁ ଲୁଗା କିଣି ପାରି ନାହିଁ । ମୋ
ଲୁଗାରୁ ମୁଁ ତାକୁ ଖଣ୍ଡେ ପିନ୍ଧିବାକୁ ଯାଚିଲି । ବୁଢ଼ା ମୁଣ୍ଡ ହଲାଇ
ମନା କଲା । ତା କଥା ମୁଁ ସବୁ ବୁଝି ପାରିଲି ନାହିଁ । ମୋଟାମୋଟି
ବୁଝିଲି ଯେ, ତାଙ୍କ ଦେଶରେ କେହି ଲୁଗା ପିନ୍ଧନ୍ତି ନାହିଁ; ସେ
କାହିଁକି ପିନ୍ଧିବ ? ତାଙ୍କ ଗାଁକୁ ଯିବାପାଇଁ ବୁଢ଼ା ମୋତେ
ଡାକିଲା । ମୁଁ ତା ପଛେ ପଛେ ଗଲି । ଘୋର ବଣ; ବହୁତ ଦୂର

ଯିବା ପରେ ଗୋଟାଏ ପାହାଡ଼ ପଡ଼ିଲା । ପାହାଡ଼ଟିରେ ଗୁଡ଼ିଏ ଗୁଡ଼ିଏ ଗୁମ୍ଫା ଦେଖିଲି । ବୁଢ଼ା ଗୋଟାଏ ଗୁମ୍ଫାକୁ [illegible] ଦଶ ଜଣ ସେହିପରି ଲଙ୍ଗଳା ସ୍ତ୍ରୀ, ପୁରୁଷ, ପିଲା ମୋ ପାଖରେ ଆସି ପହଞ୍ଚିଲେ । ସେମାନେ ମୋତେ ଭାରି ଆଦର କଲେ । କେତେ ପ୍ରକାର ଫଳ ଆଣି ମୋତେ ଖାଇବାକୁ ଦେଲେ । ରାତିରେ ତାଙ୍କ ଗୁମ୍ଫା ଭିତରେ ମୁଁ ଶୋଇଲି । ସକାଳେ ବଡ଼ ମଣିଷମାନେ ମୋତେ ସେହି ଗୁମ୍ଫାରେ ରଖି ଦେଇ ବଣ ଭିତରକୁ ଗଲେ । ପିଲାମାନେ ଗୁମ୍ଫାରେ ରହିଲେ । ବେଳ ପହରରେ ଆଉ ସେମାନେ ବଣରୁ ଫେରିଲେ । କେହି ଫଳ, କେହି ମୂଳ, କିଏ ଚଢ଼େଇ, କିଏ ବା ହରିଣ ଆଣି ଥାଆନ୍ତି । ଚକମକି ପଥରରୁ ନିଆଁ ବାହାର କରି ଶୁଖିଲା ପତର ଜାଳିଲେ । ହରିଣ, ଚଢ଼େଇ ସବୁ ସେ ନିଆଁରେ ପୋଡ଼ିଲେ । ସମସ୍ତେ ନିଆଁ ଚାରିପାଖରେ ବସି ଫଳ, ମୂଳ, ମାଂସ ଖାଇଲେ । ମୋତେ ମଧ୍ୟ ଯଥେଷ୍ଟ ଖାଇବାକୁ ଦେଲେ । ମାତ୍ର ମୁଁ ଖାଲି ଫଳ ମୂଳ ଖାଇଲି, ପୋଡ଼ାମାଂସ ଖାଇବାକୁ ମୋ ମନ ହେଲା ନାହିଁ । ତାଙ୍କ ସାଙ୍ଗରେ ତିନି ଚାରି ଦିନ ରହିବା ପରେ ମୋତେ ଜର ହେଲା ।

ମୁଁ ତାଙ୍କୁ କହି ସେଠାରୁ ବିଦାୟ ନେଇ ଆସିଲି । ଆସିବା-ବେଳେ ଦୁଇ ଜଣ ବୁଢ଼ା ମୋ ସାଙ୍ଗରେ ଆସିଲେ । ଚାରି ଦିନରେ ମୋତେ ବଣ ପାର କରାଇ ଦେଶରେ ଛାଡ଼ିଦେଇ ଗଲେ । ଦେଶରେ ପହଞ୍ଚିବାରୁ ମୋ ଦେହ ଭଲ ହୋଇଗଲା । ପନ୍ଦର ଦିନ ପରେ ମୁଁ ଆସି ଘରେ ପହଞ୍ଚିଲି ।

ଘରେ ପହଞ୍ଚି ଆମ ଅଜାଙ୍କୁ ସବୁ କଥା କହିଲି । ଅଜା ମୋ ସାହସ କଥା ଶୁଣି ଭାରି ଖୁସି ହେଲେ ଏବଂ କହିଲେ, ତୁ ଏପରି ବୁଢ଼ା ହେଲୁ, ଆଦିମ ଜାତିଙ୍କ କଥା ଆଜଯାଏ ଜାଣିଲୁ ନାହିଁ ? ତୁ ପରା ଇତିହାସ ପଢ଼ିଛୁ? ଇତିହାସରେ ଆଗେ ପଢ଼େ ଆଦିମ ମନୁଷ୍ୟମାନଙ୍କ କଥା । ମୁଁ କହିଲି, ସିଆଦିନ କଥା ମୋ ମନରେ ନାହିଁ । ଅଜା ତହୁଁ କହିଲେ, ଏ ପୃଥିବୀରେ କେବେ ମନୁଷ୍ୟ ପ୍ରଥମେ ସୃଷ୍ଟି ହୋଇଥିଲେ, ସେ କଥାକେହିକହି ପାରିବେ ନାହିଁ । ଆଗେ ସବୁ ଅନେକ ବଣ, ଜଙ୍ଗଲ, ପୂରିଥିଲା । ବାଘ, ସିଂହ, ଗୋରୁ, ଛେଳି, ମେଣ୍ଢା ପ୍ରଭୃତି, ପଶୁ ଓ କୁଅ, କୋଇଲି, ଶଲ. ଶାଗୁଣା ପ୍ରଭୃତି



ଅନାର୍ଯ୍ୟ ଜାତି

ପକ୍ଷୀ ଓ ଅନ୍ୟାନ୍ୟ କୀଟପତଙ୍ଗ ସୃଷ୍ଟି କଲା ପରେ ପରମେଶ୍ୱର ଏହି ପୃଥିବୀରେ ମନୁଷ୍ୟ ସୃଷ୍ଟି କଲେ । ତୁ ଯେଉଁ ବଣୁଆ ଲୋକଙ୍କୁ ବଣରେ ଦେଖି ଅସିଲୁ, ଆଦିମ ମନୁଷ୍ୟ ଠିକ୍ ସେହିପରି ଥିଲେ । ପଶୁମାନେ ବଣରେ ଯେ ଭାବରେ ଜୀବନ ଯାପନ କରୁଥିଲେ, ସେମାନେ ସେହିପରି କରୁଥିଲେ । ପ୍ରଥମେ ସେମାନେ ଫଳ ମୂଳ ଶାଗ ଓ ଝରଣା ଜଳ ପିଇ ବଞ୍ଚୁଥିଲେ । ପରେ ପଶୁ, ପକ୍ଷୀମାନଙ୍କ ମାଂସ ଖାଇ ଶିଖିଲେ । ସେମାନେ ଏକ ସ୍ଥାନରେ ସ୍ଥିର ହୋଇ ରହି ପାରୁ ନ ଥିଲେ । ଦଳ ବାନ୍ଧି ବଣରେ ବୁଲୁଥିଲେ । ଯେଉଁଦିନ ଆଦିମ ମାନବ ଅଗ୍ନିର ସନ୍ଧାନ ପାଇଲା ଓ ତାର ସାହାଯ୍ୟରେ ଖାଦ୍ୟବସ୍ତୁ ସିଦ୍ଧ କରି ଖାଇ ଶିଖିଲା, ସେହି ଦିନଠାରୁ

ପଶୁ ଅପେକ୍ଷା ସେ ଯେ ଉତ୍କୃଷ୍ଟ ଜୀବ ତାହା ବୁଝି ପାରିଲା । ଶୀତ ଓ ଉତ୍ତାପରୁ ଆତ୍ମରକ୍ଷା କରିବାର ପ୍ରବୃତ୍ତି ବହୁ ପରେ ତା ମନରେ ଜାତ ହେବାରୁ ପର୍ବତ ଗୁମ୍ଫା ଭିତରେ କିଛିକାଳ କଟାଇଥିଲା । କ୍ରମେ ଗଛର ଡାଳପତ୍ର ପ୍ରଭୃତିରେ କୁଡ଼ିଆ କରି ଶିଖିଲା । ଏବେ ମଧ୍ୟ ପୃଥିବୀରେ ଅନେକ ଆଦିମଜାତି ସବୁ ଦେଶରେ ଅଛନ୍ତି । ସେମାନେ ପର୍ବତ ଗୁମ୍ଫାରେ ବା କୁଡ଼ିଆରେ ରହନ୍ତି । ଲଜ୍ଜାନିବାରଣ ପାଇଁ ଲୁଗା ପିନ୍ଧିବା ଅନେକ ପର କଥା । ଆମ ପୂର୍ବପୁରୁଷମାନେ ଯେ ପ୍ରଥମେ ଲଙ୍ଗଳା ହୋଇ ବୁଲୁଥିଲେ ଓ ପରେ ଗଛର ପତ୍ର, ବକଳ ପ୍ରଭୃତି ପିନ୍ଧୁଥିଲେ, ବନବାସୀ ଆଦିମ ଜାତିର ଲୋକଙ୍କୁ ଦେଖି ତୁ ଏହା ବେଶ୍ ବୁଝି ପାରିଥିବୁ । ସେମାନେ ପ୍ରଥମ ଅବସ୍ଥାରେ ପଥର ବା ଟେକା ପକାଇ ଓ ଗଛଡାଳରେ ପିଟି ପଶୁପକ୍ଷୀ ମାରୁଥିଲେ । କ୍ରମେ ପଥରକୁ ଘଷି ତାକୁ ହତିଆରରୂପେ ବ୍ୟବହାର କଲେ । ପରେ ତମ୍ବା, ଲୁହା ପ୍ରଭୃତି ଧାତୁ ଦ୍ରବ୍ୟର ବ୍ୟବହାର ଜାଣି ପାରି ସେଥିରେ କଟୁରି, କୁରାଢ଼ି ପ୍ରଭୃତି ତିଆରି କଲେ ।

ବହୁକାଳ ଏହିପରି କଟିଯିବା ପରେ ବଣ କାଟି ଜମି ବାହାର କରି ତହିଁରେ ନାନାପ୍ରକାର ଫସଲ କରିବାକୁ ସେମାନେ ଶିଖିଲେ । ସେହି ସମୟରୁ ଏକ ସ୍ଥାନରେ ଅନେକ ଲୋକ ଘର କରି ରହି ଗୃହବାସ କଲେ । ବଣର ପଶୁମାନଙ୍କ ମଧ୍ୟରୁ ବୋଧହୁଏ ସେମାନେ କୁକୁରକୁ ପ୍ରଥମେ ପୋଷ ମନାଇଲେ । କାରଣ କୁକୁର ଶିକାରରେ ତାଙ୍କୁ ସାହାଯ୍ୟ କରୁଥିଲା । ପରେ ଘୋଡ଼ା, ଛେଳି ମେଣ୍ଢା, ଗୋରୁ ପୋଷି ଶିଖିଲେ । ମନୁଷ୍ୟ କ୍ରମେ ଏହିପରି ଉନ୍ନତି କରି କରି ବର୍ତ୍ତମାନ ଅବସ୍ଥାକୁ ଆସିଅଛି । ଏଥି ମଧ୍ୟରେ କେତେ ହଜାର ବର୍ଷ ସେ ବିତି ଗଲାଣି ସେ କଥା କିଏ କହିବ ?

ମାନ ବଣ ଜଙ୍ଗଲରେ ହଜାର ହଜାର ଲୋକ ସେହିପରି ଅବସ୍ଥାରେ ଆଜିଯାଏ ରହିଅଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ଏବେ ବଣରେ ଗୃହ ବାସ କରୁଅଛନ୍ତି । ଆଶା କରାଯାଏ, ଦିନେ ସେହି ଆଦିମ ଜାତିର ଲୋକେ ସଭ୍ୟ ହୋଇ ଆମ ପରି ହେବେ ।

### ପ୍ରଶ୍ନ

୧ । ବର୍ତ୍ତମାନ ଯେଉଁ ଆଦିମ ଜାତୀୟ ମନୁଷ୍ୟ ବଣରେ ବାସ କରନ୍ତି ତାଙ୍କଠାରୁ ଆମେ କେଉଁ କେଉଁ ବିଷୟରେ ସୁଖୀ ?

୨ । କେଉଁ ଅବସ୍ଥାରେ ମନୁଷ୍ୟ ପଶୁତ୍ୱ ଛାଡ଼ି ମନୁଷ୍ୟତ୍ୱ ଲାଭ କଲା ?

୩ । କେତେବେଳେ ମନୁଷ୍ୟ ଘର ତିଆରି କରିବାକୁ ଶିଖିଲା ?

୪ । ଆମ ଦେଶରେ ବଣରେ ବର୍ତ୍ତମାନ କେଉଁ କେଉଁ ଆଦିମ ଜାତିର ଲୋକେ ଅଛନ୍ତି ?

---

## ଆର୍ଯ୍ୟଜାତି

ଯେତେବେଳେ ଏ ଦେଶ ଖାଲି ବଣ ଜଙ୍ଗଲରେ ପୂରିଥିଲା ସେତେବେଳେ କେବଳ ଆଦିମ ଜାତିର ଲୋକେ ଏ ଦେଶରେ ବାସ କରୁଥିଲେ । ଏବେ ବଣ ଭିତରେ ଯେଉଁ କନ୍ଧ, କୋଲ୍ହ, ସାନ୍ତାଳ, ଜୁଆଙ୍ଗ ପ୍ରଭୃତି ଲୋକ ଦେଖାଯାନ୍ତି, ସେମାନେ ଆଦିମ ଜାତିର ବଂଶଧର । ପୂର୍ବକାଳରେ ଏମାନେ ଯେଉଁ ଅବସ୍ଥାରେ ଥିଲେ, ଆଜିକାଲି ପ୍ରାୟ ସେହି ଅବସ୍ଥାରେ ଅଛନ୍ତି । ଆମ ଦକ୍ଷିଣ ଦିଗରେ ତେଲେଙ୍ଗା, ତାମିଲ ଆଦି ଯେଉଁ ଜାତି ଅଛନ୍ତି, ସେମାନେ ମଧ୍ୟ ଅତି ପୂର୍ବକାଳରୁ ଏ ଦେଶରେ ଅଛନ୍ତି । ଏମାନଙ୍କୁ ଦ୍ରାବିଡ଼

ବୋଲାଯାଏ । ଦ୍ରାବିଡ଼ମାନେ ଆଦିମ ଜାତି ଲୋକଙ୍କ ଅପେକ୍ଷା ଉନ୍ନତ ଓ ସଭ୍ୟ ଥିଲେ । ଆସାମ, ବଙ୍ଗଳା ଦେଶର ଉତ୍ତରପୂର୍ବ ଦିଗରେ ଆଜି ଏକ ପ୍ରକାର ଲୋକ ଏବେ ଦେଖାଯାନ୍ତି । ସେମାନେ ମଧ୍ୟ ଏ ଦେଶର ଆଦିମ ଜାତି । ମାତ୍ର ସେମାନଙ୍କ ନାକ ଚେପ୍ଟା, ଦେହର ବର୍ଣ୍ଣ ହଳଦିଆ । ଏମାନଙ୍କୁ ମାଙ୍ଗୋଲୀୟ କୁହାଯାଏ ।

ଆଜକୁ ପ୍ରାୟ ପାଞ୍ଚ ହଜାର ବର୍ଷ ପୂର୍ବେ ଉତ୍ତର-ପଶ୍ଚିମ ଦିଗରୁ ଆଉ ଗୋଟିଏ ନୂତନ ଜାତିର ଲୋକ ଆମ ଭାରତବର୍ଷରେ ଆସି ପହଞ୍ଚିଥିଲେ । ସେମାନଙ୍କୁ ଆର୍ଯ୍ୟଜାତି କୁହାଯାଏ । ସେମାନେ ଗୋଟିଏ ନୂଆ ଭାଷା ସୃଷ୍ଟି କରିଥିଲେ, ସେ ଭାଷାକୁ ସଂସ୍କୃତ ଭାଷା କହନ୍ତି । ଆର୍ଯ୍ୟମାନେ ଏ ଦେଶରେ ଆଗରୁ ରହୁଥିବା ଆଦିମ ଜାତିର ଲୋକଙ୍କ ଅପେକ୍ଷା ବେଶି ସଭ୍ୟ ଓ ଶିକ୍ଷିତ ଥିଲେ । ଏ ଦେଶକୁ ଆସିବା ଆଗରୁ ଆମ ଦେଶର ବହୁ ଦୂରରେ ମଧ୍ୟ ଏସିଆ ନାମକ ଦେଶରେ ଏମାନଙ୍କ ପ୍ରଥମ ବାସସ୍ଥାନ ଥିଲା ବୋଲି ଏବେ ପଣ୍ଡିତମାନେ ଅନୁମାନ କରୁଅଛନ୍ତି । କୁଟୁମ୍ବ ଭିତରେ ଲୋକସଂଖ୍ୟା ବେଶି ହେବାରୁ ପ୍ରଥମ ବାସସ୍ଥାନ ଛାଡ଼ି ଦଳେ ଆମ ଭାରତବର୍ଷକୁ ଆସିଲେ । ସେମାନଙ୍କ ନାମ ହେଲା ଭାରତୀୟ ଆର୍ଯ୍ୟ । ଦଳେ ପଶ୍ଚିମକୁ ଯାଇ ଇଉରୋପ ମହାଦେଶରେ ବାସ କରି ରହିଲେ । ଇଂରେଜ, ଜର୍ମାନ, ଗ୍ରୀକ ପ୍ରଭୃତି ଜାତିର ଲୋକମାନେ ସେମାନଙ୍କ ବଂଶଧର । ଅନ୍ୟ ଦଳେ ପାରସ୍ୟ ଦେଶ ଆଡ଼କୁ ଯାଇ ସେ ଦେଶରେ ରହିଲେ । ଏଥିରୁ ଜଣାଯାଉଅଛି ଯେ ଭାରତବର୍ଷ, ଇଉରୋପ ଓ ପାରସ୍ୟର ଅଧିବାସୀଙ୍କ ପୂର୍ବପୁରୁଷମାନେ ଆଗେ ଏକ ଜାଗାରେ ଥିଲେ ।

ଆମ ଓଡ଼ିଶାର ଉତ୍ତର-ପଶ୍ଚିମ ଦିଗରେ ପଞ୍ଜାବ ବୋଲି ଗୋଟିଏ ପ୍ରଦେଶ ଅଛି । ଆର୍ଯ୍ୟମାନେ ପ୍ରଥମେ ଆସି ସେହିଠାରେ ପହଞ୍ଚିଥିଲେ । ତା ନିକଟରେ ହିମାଳୟ ପର୍ବତ । ଅନେକ ନଦୀ ହିମାଳୟରୁ ବାହାରି ସେହି ପ୍ରଦେଶ ବାଟେ ସମୁଦ୍ରକୁ ବହି ଯାଉଥିଲେ । ସେହି ନଦୀମାନଙ୍କ ଭିତରେ ସିନ୍ଧୁ ଖୁବ୍ ବଡ଼ । ସରସ୍ୱତୀ ଓ ଦୃଷଦ୍‌ବତୀ ନାମରେ ଆଉ ଦୁଇଟି ପ୍ରସିଦ୍ଧ ନଦୀ ମଧ୍ୟ ସେହି ଅଞ୍ଚଳରେ ବହୁଥିଲା । ସେହି ନଦୀକୂଳ ଧାରି ସୁନ୍ଦର ସ୍ଥାନ । ସ୍ୱଚ୍ଛ ମଧୁର ଜଳର ସୁଅ ସବୁବେଳେ ସେ ନଈରେ ବହୁଥିଲା । ଏଡ଼େ ସୁନ୍ଦର ସ୍ଥାନ ଦେଖି ଆର୍ଯ୍ୟମାନେ ସେହିଠାରେ ଘରଦ୍ୱାର କରି ରହିଗଲେ । ସେମାନେ ମନେ କଲେ, ଏପରି ସୁନ୍ଦର ପର୍ବତ, ନଦୀ, ଗଛ, ଲତାମାନଙ୍କୁ ଯେ ସୃଷ୍ଟି କରିଅଛନ୍ତି, ସେହି ସୃଷ୍ଟିକର୍ତ୍ତା ଈଶ୍ୱରଙ୍କୁ ଯେବେ ମନୁଷ୍ୟ ଜାଣି ପାରିବ, ତେବେ ମନୁଷ୍ୟର ସଂସାରରେ ଆଉ ଦୁଃଖ ରହିବ ନାହିଁ । ଏହା ବିଶ୍ୱାସ କରି ସେମାନେ ସମସ୍ତେ ଈଶ୍ୱରଙ୍କ ବିଷୟରେ ନାନାକଥା ଆଲୋଚନା କଲେ ଏବଂ ତାଙ୍କ ଗୁଣ ଓ କ୍ଷମତା ବର୍ଣ୍ଣନା କରି ଅନେକ ମନ୍ତ୍ର ଓ ସ୍ତବ ରଚନା କଲେ । ଏହି ମନ୍ତ୍ର ଓ ସ୍ତବସମଷ୍ଟିର ନାମ ବେଦ ।

ବେଦରେ ମନ୍ତ୍ର, ସ୍ତବ ଛଡ଼ା ଆହୁରି ଅନେକ କଥା ଅଛି । ବେଦ ଶବ୍ଦର ମୂଳ ଅର୍ଥ 'ଜ୍ଞାନ' । ଯେଉଁ ଆର୍ଯ୍ୟମାନେ ପ୍ରଥମେ ଏହି ବେଦ ରଚନା କରିଥିଲେ, ସେମାନଙ୍କୁ ଋଷି କୁହାଯାଉଥିଲା । ଈଶ୍ୱରଙ୍କୁ ସବୁବେଳେ ଧ୍ୟାନ କରିବାରୁ ଈଶ୍ୱର ସେମାନଙ୍କ ହୃଦୟରେ ଯେଉଁ ନିର୍ମଳ ଓ ପବିତ୍ର ଜ୍ଞାନ ଦେଲେ, ସେମାନେ ତାହା ବେଦରୂପରେ ଲେଖିଗଲେ । ମନୁଷ୍ୟ ସଂସାରରେ ଆଜଯାଏ

ଯେତେ ପ୍ରକାର ଜ୍ଞାନଲାଭ କରିଅଛୁ, ବେଦରେ ସେ ସମସ୍ତର ସୂଚନା ଅଛି । ଆଗେ ଏ ଦେଶର ଲୋକେ କେବଳ ବେଦ ପଢ଼ି ପଣ୍ଡିତ ହେଉଥିଲେ । ଏବେ ମଧ୍ୟ ଅନେକ ଲୋକ ଏହି ବେଦ ପଢ଼ନ୍ତି । ପରେ ବେଦ ପଢ଼ି ଲୋକେ ସ୍ମୃତି ପୁରାଣ ପ୍ରଭୃତି ଅନ୍ୟାନ୍ୟ ଗ୍ରନ୍ଥ ଲେଖିଥିଲେ । ପୃଥିବୀରେ ଯେତେ ଗ୍ରନ୍ଥ ଅଛି, ବେଦ ସେମାନଙ୍କ ମଧ୍ୟରେ ସବୁଠାରୁ ପୁରାତନ । ଭାରତୀୟ ଆର୍ଯ୍ୟମାନେ ଆଦ୍ୟ ଓ ପବିତ୍ର ଧର୍ମଗ୍ରନ୍ଥ ବେଦକୁ ଈଶ୍ୱରବାଣୀ ବୋଲି ବିଶ୍ୱାସ କରନ୍ତି । ସେମାନଙ୍କ ଧାରଣା ଯେ, ବେଦରେ ଯାହା ଲେଖା ଅଛି ତହିଁରେ ଆଦୌ ଭ୍ରମପ୍ରମାଦ ନାହିଁ । ତେଣୁ ସେମାନେ ଈଶ୍ୱରଙ୍କୁ ଯେପରି ମାନନ୍ତି, ଈଶ୍ୱରଙ୍କର ବାଣୀ ବୋଲି ବେଦକୁ ସେହିପରି ମାନନ୍ତି । ଏହି ବେଦକୁ ପାଠ କଲେ, ସେ କାଳରେ ଆର୍ଯ୍ୟମାନେ କିପରି ଚଳୁଥିଲେ ସେ ବିଷୟରେ ଅନେକ କଥା ଜଣାଯାଏ । ଆଜିକାଲି ଭାରତବର୍ଷରେ ଯେଉଁମାନେ ହିନ୍ଦୁ ନାମରେ ପରିଚିତ ହେଉଅଛନ୍ତି, ସେମାନେ ସେହି ପ୍ରାଚୀନ ଭାରତୀୟ ଆର୍ଯ୍ୟଜାତିର ବଂଶଧର; କିନ୍ତୁ କାଳକ୍ରମେ ଆଦିମବାସୀ ଓ ଦ୍ରାବିଡ଼ମାନଙ୍କ ଆଚାର ବ୍ୟବହାର ସେମାନଙ୍କ ମଧ୍ୟରେ ଅନେକ ପରିମାଣରେ ପ୍ରବେଶ କରିଅଛି ।

ଆର୍ଯ୍ୟମାନଙ୍କର ଏ ଦେଶକୁ ଆସିବା ପୂର୍ବେ ଏ ଦେଶରେ ଯେଉଁ ଆଦିମ ଅଧିବାସୀ ଦ୍ରାବିଡ଼ ଓ ମାଙ୍ଗୋଲୀୟମାନେ ଥିଲେ, ସେମାନଙ୍କ ସଙ୍ଗେ ଆର୍ଯ୍ୟମାନଙ୍କର ଯୁଦ୍ଧ ହେଲା । ଯୁଦ୍ଧରେ ସେମାନେ ସମସ୍ତେ ପରାସ୍ତ ହେଲେ । ଦ୍ରାବିଡ଼ମାନେ ଦକ୍ଷିଣ ଆଡ଼କୁ ଚାଲିଯାଇ ସେ ଦେଶରେ ରହିଲେ ଏବଂ ଅନ୍ୟମାନେ ବଣ ପର୍ବତରେ ଆଶ୍ରୟ

ତେବେ ଦ୍ରାବିଡ଼ମାନେ ସଭ୍ୟ ଶିକ୍ଷିତ ଥିଲେ । ସେମାନେ ପରେ ଆର୍ଯ୍ୟମାନଙ୍କ ସଙ୍ଗେ ମିଶି ଆର୍ଯ୍ୟସଭ୍ୟତା ଗ୍ରହଣ କରିନେଲେ । କିନ୍ତୁ ଆଦିମ ଅଧିବାସୀମାନେ ଆର୍ଯ୍ୟମାନଙ୍କ ସଙ୍ଗେ ନ ମିଶି ଅଦ୍ୟାପି ସେହିପରି ଅବସ୍ଥାରେ ବଣ ଜଙ୍ଗଲରେ ରହିଅଛନ୍ତି । ଏହି ଆଦିମ ଅଧିବାସୀମାନଙ୍କୁ ଆର୍ଯ୍ୟମାନେ ଅନାର୍ଯ୍ୟ ବୋଲି ଡାକୁ ଥିଲେ । ଅନାର୍ଯ୍ୟମାନେ ପରାସ୍ତ ହୋଇ ବଣ,ପର୍ବତକୁ ପଳାଇବାରୁ ଆର୍ଯ୍ୟମାନେ ପଞ୍ଜାବ ପ୍ରଦେଶ ଛାଡ଼ି କ୍ରମେ ରାଜପୁତାନା ଉତ୍ତର ପଶ୍ଚିମ-ପ୍ରଦେଶ; ମଧ୍ୟପ୍ରଦେଶ, ବମ୍ବେ, ଓଡ଼ିଶା ଓ ବଙ୍ଗଳା ପ୍ରଭୃତି ଅଧିକାର କରି ସେ ଦେଶମାନଙ୍କରେ ରହିଲେ । ଏ ଦେଶମାନଙ୍କ ମଧ୍ୟରୁ କେତେକ ଦେଶକୁ ଆଗେ ବ୍ରହ୍ମାବର୍ତ୍ତ, ବ୍ରହ୍ମର୍ଷିଦେଶ, ମଧ୍ୟଦେଶ ପ୍ରଭୃତି ନାମରେ ଅଭିହିତ କରାଯାଉଥିଲା ।

ଯେତେବେଳେ ଆର୍ଯ୍ୟମାନେ ପଞ୍ଜାବରେ ରହୁଥିଲେ ସେତେବେଳେ ଅନାର୍ଯ୍ୟମାନଙ୍କ ସଙ୍ଗେ ସେମାନଙ୍କର ଯୁଦ୍ଧ ହେଉଥିଲା । ତେଣୁ ଧର୍ମକାର୍ଯ୍ୟ କରିବାପାଇଁ ସେମାନଙ୍କୁ ସମୟ ମିଳୁ ନ ଥିଲା । ତେଣୁ ସେମାନଙ୍କ ମଧ୍ୟରୁ ଯେଉଁମାନେ ଯୁଦ୍ଧ ନ କରି କେବଳ ଈଶ୍ୱର ଚିନ୍ତା କରୁଥିଲେ, ସେମାନେ ହେଲେ ବ୍ରାହ୍ମଣ । ଯେଉଁମାନେ ଯୁଦ୍ଧ କରୁଥିଲେ ସେମାନଙ୍କୁ କୁହାଗଲା କ୍ଷତ୍ରିୟ । କୃଷିକର୍ମ, ପଶୁପାଳନ ପ୍ରଭୃତି ଯେଉଁମାନେ କଲେ, ସେମାନେ ହେଲେ ବୈଶ୍ୟ । ପ୍ରଥମ ଅବସ୍ଥାରେ ବ୍ରାହ୍ମଣ କ୍ଷତ୍ରି କର୍ମ କଲେ କ୍ଷତ୍ରିୟ ହେଉଥିଲେ ଓ ବୈଶ୍ୟ ବ୍ରାହ୍ମଣ କର୍ମ କଲେ ବ୍ରାହ୍ମଣ ବୋଲାଉଥିଲେ । ମାତ୍ର କାଳକ୍ରମେ ଏ ଜାତିବିଭାଗ ବଂଶଗତ ହୋଇପଡ଼ିଲା ।

## ପ୍ରଶ୍ନ

୧ । ଆର୍ଯ୍ୟମାନଙ୍କ ଆସିବା ପୂର୍ବେ ଏ ଦେଶରେ କେଉଁମାନେ ରହୁଥିଲେ ?

୨ । ବର୍ତ୍ତମାନ ପୃଥିବୀରେ କେଉଁ କେଉଁ ଦେଶର ଲୋକେ ପ୍ରାଚୀନ ଆର୍ଯ୍ୟଜାତିର ବଂଶଧର ?

୩ । ବେଦ କଅଣ ? ବେଦରେ କେଉଁ ବିଷୟ ଲେଖା ହୋଇଅଛି ?

୪ । ପଞ୍ଜାବ ଆମ ଓଡ଼ିଶାର କେଉଁ ଦିଗରେ ? ପ୍ରାଚୀନ କାଳରେ ସେ ଦେଶର ନାମ କଅଣ ଥିଲା ?

---

## ଶ୍ରୀ ରାମଚନ୍ଦ୍ର

ପୂର୍ବକାଳରେ ଆମ ଭାରତରେ ଅଯୋଧ୍ୟା ନାମରେ ଗୋଟିଏ ଦେଶ ଥିଲା । ସେଠାରେ ଦଶରଥ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । କୌଶଲ୍ୟା, କୈକେୟୀ ଓ ସୁମିତ୍ରା ନାମରେ ତାଙ୍କର ତିନିଗୋଟି ରାଣୀ ଥିଲେ । ଏହି ତିନି ରାଣୀଙ୍କ ଗର୍ଭରୁ ଦଶରଥଙ୍କର ଚାରିପୁଅ ଜାତ ହୋଇଥିଲେ । ରାମଚନ୍ଦ୍ର ଭାଇମାନଙ୍କ ମଧ୍ୟରେ ବଡ଼; ସେ କୌଶଲ୍ୟାଙ୍କ ଗର୍ଭରୁ, ଭରତ କୈକେୟୀଙ୍କ ଗର୍ଭରୁ ଏବଂ ଲକ୍ଷ୍ମଣ ଶତ୍ରୁଘ୍ନ ସୁମିତ୍ରାଙ୍କ ଗର୍ଭରୁ ଜନ୍ମିଥିଲେ । ପିଲାଦିନେ ଏମାନେ ସମସ୍ତେ ନାନାପ୍ରକାର ପାଠ ପଢ଼ିଥିଲେ ଏବଂ କିପରି ଯୁଦ୍ଧ କରିବାକୁ ହୁଏ ଶିଖିଥିଲେ । ଚାରି ଭାଇଙ୍କ ଭିତରେ ଭାରି ସ୍ନେହ ଥିଲା । ବିଶେଷରେ ରାମ ଓ ଲକ୍ଷ୍ମଣ ଏବଂ ଭରତ ଓ ଶତ୍ରୁଘ୍ନ ପରସ୍ପରକୁ ଭାରି ସୁଖ ପାଉଥିଲେ ।

ଏହି ସମୟରେ ଅଯୋଧ୍ୟା ନିକଟରେ ମିଥିଳା ନାମରେ ଅଉ ଗୋଟିଏ ରାଜ୍ୟ ଥିଲା । ସେ ରାଜ୍ୟର ରାଜା ଜନକଙ୍କର ସୀତା



ନାମରେ ଗୋଟିଏ ଝିଅ ଥିଲେ । ସୀତା ଦେଖିବାକୁ ଯେପରି ସୁନ୍ଦରୀ, ସେହିଭଳି ଭାରି ଗୁଣବତୀ । ତାଙ୍କ ବାପା ଜନକଙ୍କର ଗୋଟିଏ ବଡ଼ ଧନୁ ଥିଲା । ଜନକ ପଣ କରିଥିଲେ ଯେ, ଯେଉଁ ବୀର ତାଙ୍କ

ଧନୁରେ ଗୁଣ ଚଢ଼ାଇ ପାରିବ, ସେ ତାଙ୍କ ସଙ୍ଗେ ସୀତାଙ୍କୁ ବିବାହ କରାଇବେ । ଏ ଖବର ଶୁଣି ଭିନ୍ନ ଭିନ୍ନ ରାଜ୍ୟରୁ ଅନେକ ବୀର ମିଥିଳାରେ ଆସି ରୁଣ୍ଡ ହେଲେ । ଧନୁରେ ଗୁଣ ଚଢ଼ାଇବା ଦୂରେ ଥାଉ, କେହି ସେ ଧନୁକୁ ଟେକି ପାରିଲେ ନାହିଁ । ଶେଷରେ ରାମଚନ୍ଦ୍ର ସେ ଧନୁକୁ ଉଠାଇ ଯେତେବେଳେ ତହିଁରେ ଗୁଣ ଚଢ଼ାଇବାପାଇଁ ତାକୁ ବଙ୍କା କଲେ ସେତେବେଳେ ସେ ଧନୁ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା । ରାମଙ୍କ ସଙ୍ଗେ ସୀତାଙ୍କର ବିବାହ ହେଲା । ଅନ୍ୟ ରାଜାମାନେ ଅପମାନରେ ଫେରିଗଲେ ।

•

ମହାରାଜା ଦଶରଥଙ୍କ ରାଜ୍ୟ ଖୁବ୍ ବଡ଼ ଥିଲା । ତାଙ୍କ ରାଜ୍ୟରେ ଅନେକ ବଡ଼ ବଡ଼ ପଣ୍ଡିତ ଥିଲେ ଓ ତାଙ୍କ ପ୍ରଜାମାନେ ଧନୀ ଓ ସୁଖୀ ଥିଲେ । ମୋଟରେ କହିଲେ, ସେ ପ୍ରଜାମାନଙ୍କୁ ଏପରି ସୁଖରେ ପାଳୁଥିଲେ ଯେ, ଦୁଃଖ କଅଣ—ତାଙ୍କ ପ୍ରଜାମାନେ ଆଦୌ ଜାଣି ପାରୁ ନ ଥିଲେ । କିନ୍ତୁ କ୍ରମେ ସେ ବୁଢ଼ା ହୋଇଯିବାରୁ ପ୍ରଜାଙ୍କ କଥା ଭଲ ବୁଝି ପାରିଲେ ନାହିଁ; ତେଣୁ ସେ ବଡ଼ପୁଅ ରାମଚନ୍ଦ୍ରଙ୍କୁ ଯୁବରାଜ କରିବେ ବୋଲି ସ୍ଥିର କଲେ । ରାମ ମଧ୍ୟ ଭାରି ଧୀର, ବିନୟୀ ଓ ଭଦ୍ର ଥିଲେ । ପ୍ରଜାମାନେ ତାଙ୍କୁ ଖୁବ୍ ଭକ୍ତି କରୁଥିଲେ । ତାଙ୍କର ଯୁବରାଜ ହେବା ସମ୍ବାଦ ଶୁଣି ସମସ୍ତେ ଖୁସି ହେଲେ । ଅଭିଷେକ ହେବାର ସବୁ ଯୋଗାଡ଼ ହେଲା । ଲୋକେ ନାନାପ୍ରକାର ଉତ୍ସବ କଲେ । ମାତ୍ର ଏ ଖବର ଶୁଣି କୈକେୟୀଙ୍କ ମନରେ ଭାରି ଦୁଃଖ ହେଲା । ଦଶରଥଙ୍କୁ କହିଲେ, "ତୁମ୍ଭେ ପୂର୍ବେ ମୋତେ ଦୁଇଗୋଟି ବର ଦେବ ବୋଲି ସତ୍ୟ କରିଥିଲ, ମୋତେ ବର୍ତ୍ତମାନ ସେ ବର ଦୁଇଗୋଟି ଦିଅ । ପ୍ରଥମ ବରରେ ରାମ ଚଉଦବର୍ଷ ବନକୁ

ପାଇଁ ଓ ଦ୍ୱିତୀୟ ବରରେ ମୋ ପୁଅ ଭରତ ଅଯୋଧ୍ୟାରେ ଯୁବରାଜ ହେଉ ।"

ଏହି କଥା ଶୁଣି ଦଶରଥ ଅଜ୍ଞାନ ହୋଇ ତଳେ ପଡ଼ିଗଲେ । କୈକେୟୀ ଏସବୁ କଥା ରାମଙ୍କୁ କହିବାରୁ ସେ ପିତାଙ୍କ ସତ୍ୟରକ୍ଷା ପାଇଁ ଆନନ୍ଦରେ ବନକୁ ଯିବାକୁ ପ୍ରସ୍ତୁତ ହେଲେ । ତାଙ୍କ ସ୍ତ୍ରୀ ସୀତା ଓ ସାନଭାଇ ଲକ୍ଷ୍ମଣ ତାଙ୍କ ସଙ୍ଗରେ ବନକୁ ବାହାରିଲେ । ଯେତେବେଳେ ଏ ତିନିଜଣ ତପସ୍ୱୀ ବେଶରେ ସହର ଭିତର ବାଟେ ଗଲେ ସେତେବେଳେ ଅଯୋଧ୍ୟାର ସ୍ତ୍ରୀ ପୁରୁଷ ସମସ୍ତେ ହାହାକାର କଲେ ଓ ବିକଳ ହୋଇ ବହୁତ କାନ୍ଦିଲେ ।

ଯେଉଁଦିନ ଏମାନେ ବନକୁ ଗଲେ, ସେଦିନ ଭରତ ଓ ଶତ୍ରୁଘ୍ନ ଦୁଇ ଭାଇ ମାମୁଘରକୁ ଯାଇଥିଲେ । ରାମ, ଲକ୍ଷ୍ମଣ ଓ ସୀତା ଚାଲିଯିବା ପରେ ଦଶରଥ 'ହା ରାମ', 'ହା ରାମ,' କହି କହି ପ୍ରାଣତ୍ୟାଗ କଲେ । ଭରତଙ୍କୁ ମାମୁଘରୁ ଆଣିବାପାଇଁ ସଙ୍ଗେ ସଙ୍ଗେ ଲୋକ ଗଲେ । ଭରତ ଅଯୋଧ୍ୟାରେ ପହଞ୍ଚି ଦେଖିଲେ ଯେ, ପୁତ୍ର ଶୋକରେ ବାପା ମରି ଯାଇଅଛନ୍ତି, ଲୋକମାନେ ଘୋର ଦୁଃଖରେ ଅଛନ୍ତି । ସେ ବାପାଙ୍କର ଶ୍ରାଦ୍ଧକ୍ରିୟା ଶେଷ କରି ରାମଙ୍କୁ ଫେରାଇ ଆଣିବା ପାଇଁ ନିଜେ ବନକୁ ଗଲେ । ରାମଙ୍କୁ ନାନାପ୍ରକାର ବୁଝାଇଲେ; ମାତ୍ର ବାପାଙ୍କ ସତ୍ୟ ରକ୍ଷିବାପାଇଁ ରାମ ଆଉ ବନରୁ ଫେରିଲେ ନାହିଁ । ଶେଷରେ ଭରତ ବହୁତ ପ୍ରାର୍ଥନା କରିବାରୁ ରାମ ତାଙ୍କ କାଠର ଦୁଇଗୋଟି ଭରତଙ୍କୁ ଦେଲେ । ଭରତ ସେହି କଠଉକୁ ସିଂହାସନରେ ରଖି ରାତି ପରି ଜଟାଧାରଣ କରି ଓ ଛୋଟ ବଡ଼ ଥିବା ରାମଙ୍କ ସେବକରୂପେ ରାଜ୍ୟ ଶାସନ କଲେ ।

ଏଣେ ରାମ, ଲକ୍ଷ୍ମଣ ଓ ସୀତା ବଣରେ ବୁଲି ବୁଲି ଦକ୍ଷିଣ ଆଡ଼କୁ ଚାଲିଗଲେ । ସେ ଆଡ଼େ ଗୋଦାବରୀ ନାମରେ ଗୋଟିଏ ନଦୀ ଅଛି । ସେ ନଦୀକୂଳରେ ପଞ୍ଚବଟୀ ନାମରେ ଗୋଟିଏ ସୁନ୍ଦର ବଣ ଥିଲା । ସେମାନେ ସେଠାରେ ଖଣ୍ଡିଏ କୁଡ଼ିଆ ତିଆରି କରି ରହିଲେ । ବଣରେ ସେମାନେ ଗଛର ବକଳ ପିନ୍ଧୁଥିଲେ ଓ ନାନାପ୍ରକାର ଫଳ ମୂଳ ଖାଇ ସୁଖରେ କାଳ କଟାଉଥିଲେ ।

ଆମ ଭାରତବର୍ଷର ଦକ୍ଷିଣରେ ଯେଉଁ ସମୁଦ୍ର ଅଛି, ତାହାର ନାମ ଭାରତ ମହାସାଗର । ତା ଭିତରେ ଲଙ୍କା ବୋଲି ଗୋଟିଏ ଦ୍ୱୀପ ଥିଲା । ଏବେ ଲୋକେ ତାକୁ ସିଂହଳ ବା ସିଲୋନ୍ ବୋଲି କହନ୍ତି । ସେତେବେଳେ ସେଠାରେ ରାବଣ ନାମରେ ଜଣେ ଭାରି ଦୁଷ୍ଟ ବଳବାନ ରାଜା ରାଜୁତି କରୁଥିଲା। ତାହାର ଉଡ଼ାଜାହାଜ ଥିଲା । ଯେତେବେଳେ ସେ ଶୁଣିଲା ଯେ ଦୁଇଜଣ ବାବାଙ୍କ ଗୋଟିଏ ଭାରି ସୁନ୍ଦରୀ ସ୍ତ୍ରୀ ସାଙ୍ଗରେ ଗୋଦାବରୀ ନଦୀକୂଳରେ ବଣରେ ଅଛନ୍ତି, ସେତେବେଳେ ସେ ସ୍ତ୍ରୀଙ୍କୁ ନେଇ ନିଜ ରାଣୀ କରିବା ପାଇଁ ତାହାର ଭାରି ଇଚ୍ଛା ହେଲା । ଦିନେ ରାମ ଲକ୍ଷ୍ମଣ ଦୁଇଭାଇ ବଣ ଭିତରକୁ ଶିକାର କରିବାକୁ ବାହାରି ଯାଇଥିଲେ । ଏହି ସମୟରେ ରାବଣ ଆସି ତା ଉଡ଼ାଜାହାଜରେ ସୀତାଙ୍କୁ ବସାଇ ଲଙ୍କାକୁ ଘେନି ଚାଲି-ଗଲା । ସୀତା ବହୁତ କାନ୍ଦିଲେ, ମାତ୍ର କିଛି କରି ପାରିଲେ ନାହିଁ । ସେ ସୀତାଙ୍କୁ ରାଣୀ କରିବାପାଇଁ ଭାରି ଚେଷ୍ଟା କଲା, କିନ୍ତୁ ସୀତା ତହିଁରେ ରାଜି ହେଲେ ନାହିଁ । ତେଣୁ ସେ ତା ଘରର ଗୋଟିଏ ବଗିଚା ଭିତରେ ସୀତାଙ୍କୁ ରଖିଲା ଏବଂ ପହରାବାଲା ଜଗାଇଲା । ସୀତା ସବୁବେଳେ କାନ୍ଦୁଥାଆନ୍ତି ।

ଏଣେ ରାମ, ଲକ୍ଷ୍ମଣ ଶିକାରରୁ ଫେରି ଆସି ଦେଖିଲେ ଯେ ସୀତା ନାହାନ୍ତି । ସେ ଦୁହେଁ ବିକଳ ହୋଇ ଭାରି କାନ୍ଦିଲେ ଓ ବାଉଳା ପରି ହୋଇ ବଣପାଳ ବୁଲି ତାଙ୍କୁ ଖୋଜିଲେ । ରାବଣ ସୀତାଙ୍କୁ ଚୋରିକରି ନେଇଯିବା ବେଳେ ବାଟରେ ଯେଉଁମାନେ ତାଙ୍କ ଡାକ ଶୁଣିଥିଲେ । ସେମାନେ ରାମ ଲକ୍ଷ୍ମଣଙ୍କୁ ସେ ଖବର ଦେଲେ । ସେହି ଦକ୍ଷିଣ ଦେଶରେ କିଷ୍କିନ୍ଧ୍ୟା ବୋଲି ଗୋଟାଏ ରାଜ୍ୟ ଥିଲା । ରାମ ସେ ଦେଶର ରାଜା ସୁଗ୍ରୀବଙ୍କ ସଙ୍ଗେ ମିତ ହୋଇ ତାଙ୍କୁ ସବୁକଥା କହିଲେ । ସୁଗ୍ରୀବ ସୀତାଙ୍କୁ ଖୋଜିବା ପାଇଁ ଚାରିଆଡ଼େ ଦୂତ ପଠାଇଲେ । ହନୁମାନ ନାମରେ ତାଙ୍କର ଜଣେ ଦୂତ ଲଙ୍କାରେ ସୀତାଙ୍କୁ ଠାବ କରି ଫେରିଆସି ଖବର ଦେଲେ । ତାପରେ ସୁଗ୍ରୀବ ତାଙ୍କର ଲକ୍ଷ ଲକ୍ଷ ସୈନ୍ୟଙ୍କୁ ଘେନି ଯୁଦ୍ଧ କରିବାପାଇଁ ରାମ ଲକ୍ଷ୍ମଣଙ୍କ ସଙ୍ଗେ ଲଙ୍କାକୁ ଯାତ୍ରା କଲେ । ସୈନ୍ୟମାନେ ସମୁଦ୍ର ଉପରେ ପଥରରେ ଗୋଟାଏ ପୋଲ ତିଆରି କରି ଲଙ୍କାରେ ଯାଇ ପହଞ୍ଚିଗଲେ । ରାମ ଓ ଲକ୍ଷ୍ମଣ ଦୁଇ ଭାଇ ବଡ଼ ବୀର ଥିଲେ । ସୁଗ୍ରୀବଙ୍କ ସାଙ୍ଗରେ ମଧ୍ୟ ଅନେକ ବଡ଼ ବଡ଼ ବୀର ଯାଇଥିଲେ । ରାବଣ ନିଜେ ଭାରି ଯୋଦ୍ଧା ଓ ତାହାର ପୁଅ ଇନ୍ଦ୍ରଜିତ ଓ ଭାଇ କୁମ୍ଭକର୍ଣ୍ଣ ପ୍ରଭୃତି ବି ଭାରି ଯୋଦ୍ଧା ଥିଲେ । ଖୁବ୍ ଯୁଦ୍ଧ ହେଲା, ରାବଣର ସାନଭାଇ ବିଭୀଷଣ ଯୁଦ୍ଧ ପୂର୍ବରୁ ବଡ଼ଭାଇଙ୍କୁ କହିଲା, "ଯଦି ଭଲ ହେବାର ହେଲାଣି, ଏବେ ସୀତାଙ୍କୁ ଫେରାଇ ଦିଅ । ଆଉ ଯୁଦ୍ଧ ନ ହେଉ ।" ଅନ୍ତଃପୁର ଅନେକ ଲୋକ ମଧ୍ୟ ରାବଣକୁ ବୁଝାବୁଝି କଲେ । ମାତ୍ର ରାବଣ କାହାରି କଥା ଶୁଣିଲା ନାହିଁ । ଯୁଦ୍ଧରେ ଦୁଇପକ୍ଷରୁ ଅନେକ ଲୋକ ମଲେ, ରାବଣର ପୁଅ, ଭାଇ—ସମସ୍ତେ ମଲେ । ଶେଷରେ ରାମଚନ୍ଦ୍ରଙ୍କ ବାଣରେ ରାବଣ ମଲା । ରାମ ସୀତାଙ୍କୁ ପାଇଲେ ଓ

ବିଭୀଷଣଙ୍କୁ ଲଙ୍କାରେ ରାଜା କରି ରାବଣର ଉଡ଼ାଜାହାଜରେ ବସି ଅଯୋଧ୍ୟାକୁ ଫେରି ଆସିଲେ । ସେତେବେଳକୁ ଚଉଦ ବର୍ଷ ପୂରି ଯାଇ ଥିଲା । ଭରତ ବଡ଼ଭାଇ ରାମଙ୍କ ପାଦରେ ତାଙ୍କ କଠଉ ଦିଓଟି ପିନ୍ଧାଇ ଦେଲେ । ରାମ ସୀତାଙ୍କ ସଙ୍ଗେ ସିଂହାସନରେ ବସିଲେ ଓ ତାଙ୍କ ବାପା ଯେପରି ପ୍ରଜାମାନଙ୍କୁ ପୁଅ ପରି ପାଳୁଥିଲେ ସେ ସେହିପରି ପାଳିଲେ । ରାମଙ୍କ ରାଜ୍ୟରେ ପ୍ରଜାମାନେ ଭାରି ସୁଖରେ ଥିଲେ । ଏବେ କୌଣସି ରାଜା ପ୍ରଜାମାନଙ୍କୁ ସୁଖରେ ପାଳିଲେ ଲୋକେ କଥାରେ କହନ୍ତି, "ଅମୁକ ରାଜାଙ୍କ ପ୍ରଜାଏ ରାମ-ରାଜ୍ୟରେ ରହିଅଛନ୍ତି ।"

ପ୍ରଶ୍ନ

୧ । ଭରତ କାହିଁକି ରାଜା ନ ହୋଇ ଋଷିଙ୍କ ପରି ଜୀବନ କଟାଇ ଥିଲେ ?

୨ । ଅଯୋଧ୍ୟା ଓ ଲଙ୍କା ଆମ ଓଡ଼ିଶାର କେଉଁ ଦିଗରେ ?

୩ । ରାମଚନ୍ଦ୍ର କିପରି ସୀତାଙ୍କୁ ଉଦ୍ଧାର କଲେ ?

---

# ଯୁଧିଷ୍ଠିର

ଆଗେ ଆମ ଓଡ଼ିଶାର ଉତ୍ତର ପଶ୍ଚିମ ଦିଗରେ ହସ୍ତିନାପୁର ବୋଲି ଗୋଟିଏ ସ୍ଥାନ ଥିଲା । ସେଠାରେ ଶାନ୍ତନୁ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ଦୁଇ ରାଣୀ ଥିଲେ । ବଡ଼ ରାଣୀଙ୍କ ନାମ ଗଙ୍ଗା, ସାନ ରାଣୀଙ୍କ ନାମ ସତ୍ୟବତୀ; ଭୀଷ୍ମ ଗଙ୍ଗାଙ୍କ ପୁଅ, ବିଚିତ୍ରବୀର୍ଯ୍ୟ ଓ ଚିତ୍ରାଙ୍ଗଦ ସତ୍ୟବତୀଙ୍କ ପୁଅ । ବଡ଼ଭାଇ ଭୀଷ୍ମ

ମହାପଣ୍ଡିତ ଓ ମହାବୀର ଥିଲେ, କିନ୍ତୁ ବିବାହ କରି ସଂସାର କରିବାକୁ ବା ରାଜା ହେବାକୁ ତାଙ୍କର ମନ ହେଲା ନାହିଁ । ଚିତ୍ରାଙ୍ଗଦ ମଧ୍ୟ ଅଳ୍ପ ବୟସରେ ମରିଗଲେ । ଶେଷରେ ସାନ ଭାଇ ବିଚିତ୍ରବୀର୍ଯ୍ୟ ରାଜା ହୋଇଥିଲେ । ତାଙ୍କର ଥିଲେ ଦୁଇ ରାଣୀ । ବଡ଼ ରାଣୀଙ୍କଠାରୁ ଜନ୍ମିଥିଲେ ଧୃତରାଷ୍ଟ୍ର ଓ ସାନ ରାଣୀଙ୍କଠାରୁ ପାଣ୍ଡୁ । ଧୃତରାଷ୍ଟ୍ର ଜନ୍ମାନ୍ଧ ଥିଲେ, ତେଣୁ ପାଣ୍ଡୁ ରାଜା ହେଲେ । ଧୃତରାଷ୍ଟ୍ରଙ୍କ ସ୍ତ୍ରୀଙ୍କ ନାମ ଗାନ୍ଧାରୀ ଓ ଦୁର୍ଯ୍ୟୋଧନ ଦୁଃଶାସନ ପ୍ରଭୃତି ନାମରେ ତାଙ୍କର ଶହେ ପୁଅ ଥିଲେ । ପାଣ୍ଡୁଙ୍କର ଦୁଇ ସ୍ତ୍ରୀ. ବଡ଼ ରାଣୀ କୁନ୍ତୀଙ୍କଠାରୁ ଯୁଧିଷ୍ଠିର, ଭୀମ ଓ ଅର୍ଜ୍ଜୁନ ଏବଂ ସାନ ରାଣୀ ମାଦ୍ରୀଙ୍କଠାରୁ ନକୁଳ ଓ ସହଦେବ ନାମରେ ଦୁଇ ପୁଅ ଜନ୍ମିଥିଲେ ପାଣ୍ଡୁ ଓ ମାଦ୍ରୀ ଅଳ୍ପଦିନ ପରେ ମରିଯିବାରୁ କୁନ୍ତୀ ପାଞ୍ଚ ଭାଇଙ୍କୁ ମନୁଷ୍ୟ କଲେ, ଧୃତରାଷ୍ଟ୍ର ମଧ୍ୟ ଯୁଧିଷ୍ଠିର ପ୍ରଭୃତିଙ୍କୁ ଭାରି ସ୍ନେହ କରୁଥିଲେ । ଏମାନଙ୍କ ପୂର୍ବପୁରୁଷରେ କୁରୁ ନାମରେ ଜଣେ ରାଜା ଥିଲେ । ତାଙ୍କ ନାମ ଅନୁସାରେ ଧୃତରାଷ୍ଟ୍ରଙ୍କ ପୁଅମାନଙ୍କୁ କୌରବ କୁହାଯାଉଥିଲା । କିନ୍ତୁ ଯୁଧିଷ୍ଠିର ପ୍ରଭୃତି ପାଞ୍ଚ ଭାଇଙ୍କୁ ତାଙ୍କ ବାପା ପାଣ୍ଡୁଙ୍କ ନାମ ଅନୁସାରେ ପାଣ୍ଡବ ବୋଲି ଲୋକେ କହୁଥିଲେ ।

ଧୃତରାଷ୍ଟ୍ର ବଡ଼ ବଡ଼ ଶିକ୍ଷକ ରଖି ସମସ୍ତଙ୍କୁ ପିଲାଦିନେ ନାନା ବିଷୟ ଶିକ୍ଷା ଦେଇଥିଲେ । ଦ୍ରୋଣାଚାର୍ଯ୍ୟ ଏମାନଙ୍କ ଯୁଦ୍ଧବିଦ୍ୟାରେ ଶିକ୍ଷକ ଥିଲେ । କୌରବ ଓ ପାଣ୍ଡବ ସମସ୍ତେ ଭାରି ବଳବାନ୍ ଥିଲେ । ତେଣୁ ସମସ୍ତେ ଉତ୍ତମରୂପେ ଯୁଦ୍ଧ କରି ଶିଖି ଥିଲେ । କିନ୍ତୁ ଏମାନଙ୍କ ମଧ୍ୟରେ ବଳରେ ଭୀମ ଓ ଶସ୍ତ୍ର ମାରିବାରେ ଅର୍ଜ୍ଜୁନ ସର୍ବଶ୍ରେଷ୍ଠ ହୋଇଥିଲେ । ପାଣ୍ଡବମାନଙ୍କର ବଡ଼ ଭାଇ ଯୁଧିଷ୍ଠିର ବଡ଼ ଧାର୍ମିକ ଥିଲେ । ସେ କେବେହେଁ ମିଛ କହୁ ନ-

ଥିଲେ । ସାନ ଭାଇମାନେ ସମସ୍ତେ ତାଙ୍କୁ ଭାରି ଭକ୍ତି କରୁଥିଲେ ଓ ତାଙ୍କ କଥା ଅନୁସାରେ ସବୁ କାମ କରୁଥିଲେ । କୌରବମାନଙ୍କ ମଧ୍ୟରେ ଦୁର୍ଯ୍ୟୋଧନ ବଡ଼, ମାତ୍ର ସେ ଭାରି ଅଭିମାନୀ ଓ ହିଂସ୍ରକ ଥିଲେ । ସେ ପାଣ୍ଡବମାନଙ୍କୁ ଆଦୌ ଦେଖି ପାରୁ ନ ଥିଲେ । ଧୃତରାଷ୍ଟ୍ର ପ୍ରଥମେ ଯୁଧିଷ୍ଠିରଙ୍କୁ ରାଜା କରିବାକୁ ସ୍ଥିର କରିଥିଲେ । ମାତ୍ର ଦୁର୍ଯ୍ୟୋଧନ ଏଥିରେ ବାଧା ଦେବାରୁ ସେ ବାଧ୍ୟ ହୋଇ ପାଣ୍ଡବ-ମାନଙ୍କୁ ବାରଣାବତ ନାମକ ନଗରରେ ବାସ କରିବାପାଇଁ ଆଦେଶ ଦେଲେ । ଖଳପ୍ରକୃତି ଦୁର୍ଯ୍ୟୋଧନ ବାରଣାବତରେ ଆଗରୁ ପାଣ୍ଡବମାନଙ୍କ ରହିବାପାଇଁ ଜତୁରେ ଗୋଟିଏ ଘର ନିର୍ମାଣ କରାଇ ଥିଲେ ଓ ସେ ଘରେ ପାଣ୍ଡବମାନଙ୍କ ରହିବା ପରେ ରାତିରେ ନିଆଁ ଲଗାଇ ଦେବାକୁ ଲୋକ ରଖାଇ ଥିଲେ । ପାଣ୍ଡବମାନେ ଏକଥା ଜାଣିପାରି ସେ ଘରେ ନିଆଁ ଲାଗିବା ଆଗରୁ ସେଥିର ଗୁପ୍ତ ଗୋପନରେ ପଳାଇଗଲେ ।

ବାରଣାବତରୁ ପଳାଇଯାଇ ପାଣ୍ଡବମାନେ ନାନାଦେଶରେ ବୁଲି ବୁଲି ଶେଷରେ ପଞ୍ଚାଳ ରାଜ୍ୟରେ ପହଞ୍ଚିଲେ । ସେ ଦେଶର ରାଜାଙ୍କ ଝିଅ ଦ୍ରୌପଦୀଙ୍କ ବିବାହ ପାଇଁ ସ୍ୱୟମ୍ବରକୁ ଅନେକ ଲୋକ ସେତେବେଳେ ସେଠାରେ ରୁଣ୍ଡ ହୋଇଥିଲେ । ଯେଉଁ ଲୋକ ଲକ୍ଷ୍ୟ ଭେଦ କରି ପାରିବ ତାଙ୍କ ସଙ୍ଗେ ଦ୍ରୌପଦୀଙ୍କର ବିବାହ ହେବ ବୋଲି ତାଙ୍କ ବାପା ପଣ କରିଥିଲେ । କେହି ଲକ୍ଷ୍ୟ ବିନ୍ଧି ପାରିଲେ ନାହିଁ । ଶେଷରେ ଅର୍ଜୁନ କପଟରୂପ ଧରି ଲକ୍ଷ୍ୟଭେଦ କରିବାରୁ ରାଜା ଦ୍ରୁପଦ ତାଙ୍କୁ ଦ୍ରୌପଦୀଙ୍କୁ ଦେଲେ । ମାଆଙ୍କ ଆଦେଶରେ ଦ୍ରୌପଦୀ ପାଞ୍ଚ ଭାଇଙ୍କର ପତ୍ନୀ ହେଲେ । ବିବାହ ପରେ ପାଣ୍ଡବମାନେ ରାଜ୍ୟ ପ୍ରାର୍ଥନା କରିବାରୁ ଧୃତରାଷ୍ଟ୍ର ରାଜ୍ୟକୁ

ଦୁଇଭାଗରେ ବିଭକ୍ତ କରିଦେଲେ । କୌରବମାନେ ହସ୍ତିନାରେ ଓ ପାଣ୍ଡବମାନେ ତା ପାଖରେ ଥିବା ଇନ୍ଦ୍ରପ୍ରସ୍ଥ ନାମକ ନଗରରେ ରାଜତ୍ୱ କରିବାକୁ ଲାଗିଲେ ।

ପାଣ୍ଡବମାନଙ୍କର ସମ୍ପତ୍ତି ଦେଖି ଦୁର୍ଯ୍ୟୋଧନଙ୍କର ଭାରି ଈର୍ଷା ହେଲା । ସେ ବାଜି ବଦି ପଶା ଖେଳିବାପାଇଁ ଯୁଧିଷ୍ଠିରଙ୍କୁ ଡାକିଲେ ଖେଳରେ ଯୁଧିଷ୍ଠିର ପରାସ୍ତ ହୋଇ ନିଜର ଧନ ସମ୍ପତ୍ତି, ଘର ଏବଂ ରାଜ୍ୟ ହାରିଗଲେ ଏବଂ ଶେଷରେ ସେହି ଜୁଆଖେଳ ପଣ ଅନୁସାରେ ଦ୍ରୌପଦୀ ଓ ଭାଇମାନଙ୍କ ସଙ୍ଗେ ବାରବର୍ଷ ବନବାସ ଓ ଏକବର୍ଷ ଅଜ୍ଞାତବାସରେ ରହିବା ପାଇଁ ଦୁଃଖୀ ଭିକାରୀଙ୍କ ପରି ଘର ଛାଡ଼ି ବାହାରିଲେ । ତେର ବର୍ଷପରେ ସେମାନେ ବନରୁ ଫେରି ଆସି ଦୁର୍ଯ୍ୟୋଧନଙ୍କୁ ତାଙ୍କ ରାଜ୍ୟ ଫେରାଇ ଦେବାପାଇଁ କହିଲେ, ମାତ୍ର ଦୁର୍ଯ୍ୟୋଧନ କହିଲ,"ବିନା ଯୁଦ୍ଧରେ ମୁଁ ଛୁଞ୍ଚି ଅଗରେ ଯେତେ ସ୍ଥାନ ରହିବ ସେତେ ସ୍ଥାନ ସୁଦ୍ଧା ଦେବି ନାହିଁ ।" ତେଣୁ ପାଣ୍ଡବମାନେ ବାଧ୍ୟ ହୋଇ ଯୁଦ୍ଧର ଯୋଗାଡ଼ କଲେ ।

ଦୁର୍ଯ୍ୟୋଧନ ରାଜା ହୋଇଥିବାରୁ ତା ପାଖରେ ଅନେକ ବଡ଼ ବଡ଼ ବୀର ଓ ବହୁତ ସୈନ୍ୟ ଥିଲେ । ଯୁଧିଷ୍ଠିର ବଡ଼ ସାଧୁ ଓ ଧର୍ମପରାୟଣ ଥିଲେ ଏବଂ ରାଜ୍ୟ ଛାଡ଼ି ବହୁକାଳ ବଣରେ ରହିଥିଲେ । ତଥାପି ଯେଉଁମାନେ ସେତେବେଳେ ଏ ଦେଶରେ ଧର୍ମିକ ଲୋକ ଥିଲେ, ସେମାନେ ସମସ୍ତେ ଯୁଧିଷ୍ଠିରଙ୍କୁ ସାହାଯ୍ୟ କଲେ । ଆଜିକାଲି ଦିଲ୍ଲୀ ସହର ଯେଉଁଠାରେ ଅଛି, ତା ପାଖରେ କୁରୁକ୍ଷେତ୍ର ବୋଲି ଗୋଟାଏ ବଡ଼ ପଡ଼ିଆ ଥିଲା । ଦୁଇ ପକ୍ଷଙ୍କ ସୈନ୍ୟ ସେହିଠାରେ ଯୁଦ୍ଧ କରିବା ପାଇଁ ଜମା ହେଲେ । ଦୁର୍ଯ୍ୟୋଧନଙ୍କ ସୈନ୍ୟ ବହୁତ, ଯୁଧିଷ୍ଠିରଙ୍କର ତା ଅପେକ୍ଷା ଅଳ୍ପ । ସମୁଦାୟ ଭାରତବର୍ଷରେ ଯେତେ

ବୀର ଥିଲେ, ସେମାନେ ସମସ୍ତେ ପ୍ରାୟ ଏ ଯୁଦ୍ଧରେ ଯୋଗ ଦେଇ ଥିଲେ । ଅଠର ଦିନକାଳ ଏ ଯୁଦ୍ଧ ଲାଗିଲା । ଲକ୍ଷ ଲକ୍ଷ ମନୁଷ୍ୟ ହାତୀ ଘୋଡ଼ା ପ୍ରଭୃତି ଯୁଦ୍ଧରେ ମଲେ । ଦୁର୍ଯ୍ୟୋଧନ ପକ୍ଷ ବଡ଼ ବଡ଼ ବୀର ଭୀଷ୍ମ, ଦ୍ରୋଣ, କର୍ଣ୍ଣ, ଶଲ୍ୟ, ଦୁଃଶାସନ ପ୍ରଭୃତି ସମସ୍ତେ ମଲେ । ଶେଷରେ ଭୀମଙ୍କ ହାତରେ ଦୁର୍ଯ୍ୟୋଧନ ମଧ୍ୟ ମଲା । ଧର୍ମର ଜୟ ହେଲା, ପାଣ୍ଡବମାନେ ଜିଣିଲେ । ଯୁଦ୍ଧ ଶେଷରେ କୌରବ ପକ୍ଷରୁ ତିନି ଜଣ ଓ ପାଣ୍ଡବ ପକ୍ଷରୁ ସାତଜଣ ମାତ୍ର ଜୀବିତ ଥିଲେ । ଏଭଳି ମହାଯୁଦ୍ଧ ଆଉ କେବେ ହୋଇ ନ ଥିଲା ।

ଯୁଧିଷ୍ଠିର ହସ୍ତିନାର ରାଜା ହେଲେ । ମାତ୍ର ରାଜ୍ୟ ପାଇବାପାଇଁ ଯୁଦ୍ଧରେ ଆପଣାର ଜ୍ଞାତିମାନଙ୍କୁ ମାରିଥିବାରୁ ତାଙ୍କ ମନରେ ଭାରି ଦୁଃଖ ହେଲା । ତେଣୁ ସେ ଅଶ୍ୱମେଧଯଜ୍ଞ କରି ଅନେକ ଧନ ଦ୍ରବ୍ୟ ଦାନ କଲେ । ଶେଷରେ ଅର୍ଜୁନଙ୍କ ନାତି ବାଳକ ପରୀକ୍ଷିତଙ୍କୁ ହସ୍ତିନା ସିଂହାସନରେ ବସାଇ ଭାଇମାନେ ଓ ସ୍ତ୍ରୀ ସଙ୍ଗେ ତୀର୍ଥ ବୁଲିବାପାଇଁ ସଂସାର ଛାଡ଼ି ଚାଲିଗଲେ । ନାନା ତୀର୍ଥରେ ବୁଲି ବୁଲି ହିମାଳୟ ପର୍ବତରେ ସନ୍ଧ୍ୟାସ ବେଶରେ ତପସ୍ୟା କଲେ ଏବଂ ସେଠାରୁ ସ୍ୱର୍ଗକୁ ଗମନ କଲେ ।

## ପ୍ରଶ୍ନ

୧ । ଯୁଦ୍ଧ ଶେଷରେ ଯୁଧିଷ୍ଠିର ରାଜା ନ ହୋଇ କାହିଁକି ସଂସାର ଛାଡ଼ି ଚାଲିଗଲେ ?

୨ । କୁରୁକ୍ଷେତ୍ର ଆଜ ଓଡ଼ିଶାର କେଉଁ ଦିଗରେ ଓ କେତେ ଦୂରରେ ?

୩ । ଦୁର୍ଯ୍ୟୋଧନ ପକ୍ଷରେ ଅନେକ ସୈନ୍ୟ ଥିଲେ ମୁଦ୍ଧା ସେ ଯୁଦ୍ଧରେ ହାରିଲେ କାହିଁକି ?

---

## ହରିଶ୍ଚନ୍ଦ୍ର

ଆର୍ଯ୍ୟମାନଙ୍କର ଭାରତକୁ ଆସିବା ପରେ ଏ ଦେଶରେ ସେମାନଙ୍କର ଅନେକ ରାଜା ରାଜତ୍ୱ କରିଥିଲେ । ସେତେବେଳେ ଲୋକେ ଇତିହାସ ଲେଖି ରଖୁ ନ ଥିଲେ । ତେଣୁ ସେ ସବୁ ରାଜାଙ୍କ ବିଷୟରେ ବେଶି କିଛି ଜଣାପଡ଼େ ନାହିଁ । ସେହି ରାଜାମାନଙ୍କ ମଧ୍ୟରୁ ଅଧିକାଂଶ ଯେପରି ପ୍ରଜାପାଳକ ଥିଲେ, ସେହିପରି ଦାତା ଓ ଧାର୍ମିକ ମଧ୍ୟ ଥିଲେ । ହରିଶ୍ଚନ୍ଦ୍ର ପୂର୍ବକାଳରେ ଜଣେ ବଡ଼ ଦାତା । ଏଥି ମଧ୍ୟରେ କେତେ କାଳ ଅତୀତ ହୋଇ ଗଲାଣି, ମାତ୍ର ତାଙ୍କର ଗୁଣ ଆଜଯାଏ ଲୋପ ହୋଇ ନାହିଁ । ପ୍ରାଚୀନ ଅଯୋଧ୍ୟା ତାଙ୍କର ରାଜ୍ୟଥିଲା । ଯଜ୍ଞ କଲେ ଦେବତାମାନେ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି ବୋଲି ବେଦରେ ଲେଖା ଅଛି । ମହାରାଜା ହରିଶ୍ଚନ୍ଦ୍ର ଥରେ ଗୋଟିଏ ବଡ଼ ଯଜ୍ଞ କରିଥିଲେ । ବଶିଷ୍ଠ ନାମରେ ଜଣେ ଋଷି ଯଜ୍ଞରେ ତାଙ୍କର ପୁରୋହିତ କାମ କରିଥିଲେ । ଯଜ୍ଞ ଶେଷରେ ହରିଶ୍ଚନ୍ଦ୍ର ବ୍ରାହ୍ମଣମାନଙ୍କୁ ବହୁତ ଧନରତ୍ନ ଗାଈ ଆଦି ଦାନ କଲେ । ବଶିଷ୍ଠ ବହୁତ ଜିନିଷ ପାଇ ଭାରି ଖୁସିରେ ତାଙ୍କ ମଠକୁ ଫେରିଲେ । ବାଟରେ ବିଶ୍ୱାମିତ୍ର ନାମରେ ଆଉ ଜଣେ ଋଷିଙ୍କ ସଙ୍ଗରେ ତାଙ୍କର ଦେଖା ହେଲା । ବଶିଷ୍ଠ ହରିଶ୍ଚନ୍ଦ୍ରଙ୍କର ଭାରି ପ୍ରଶଂସା କଲେ । ଏହା ଶୁଣି ବିଶ୍ୱାମିତ୍ର

ଯାଇ ହରିଶ୍ଚନ୍ଦ୍ର ପାଖରେ ପହଞ୍ଚିଲେ ଏବଂ ତାଙ୍କୁ କହିଲେ, 'ମୁଁ ଶୁଣିଲି, ତୁମ୍ଭେ ଜଣେ ଦାତା । ମୋତେ କିଛି ଦେବ ବୋଲି ସତ୍ୟ କର । ତେବେ ମୁଁ ମାଗିବି ।' ରାଜା କହିଲେ, "ଆପଣ ଯାହା ମାଗିବେ ତାହା ମୁଁ ନିଶ୍ଚୟ ଦେବି ।" ଏହା ଶୁଣି ବିଶ୍ୱାମିତ୍ର କହିଲେ, 'ତୁମ୍ଭର ସମସ୍ତ ସମ୍ପତ୍ତି ସହିତ ରାଜ୍ୟ ମୋତେ ଦାନକର ।' ରାଜା ଆନନ୍ଦରେ କହିଲେ, ହେଉ 'ହେଉ ।' ତା ପରେ ବିଶ୍ୱାମିତ୍ର ରାଜାଙ୍କଠାରୁ ରାଜ୍ୟ ଓ ଧନସମ୍ପତ୍ତି ସମ୍ପ୍ରଦାୟ ଦାନ ଗ୍ରହଣ କଲେ । ଦାନ ଦେଇ ସାରି ରାଜା କହିଲେ, 'ଏବେ ସମସ୍ତ ଧନ ଦ୍ୱାର ଓ ରାଜ୍ୟରେ ତ ମୋର କିଛି ଅଧିକାର ନାହିଁ । ମୁଁ ମୋର ସ୍ତ୍ରୀ ଓ ପୁତ୍ରଙ୍କୁ ନେଇ ବଣକୁ ଯାଉଛି ।" ତାଙ୍କ ସ୍ତ୍ରୀଙ୍କ ନାମ ଶୈବ୍ୟା ଓ ପୁଅ ନାମ ରୋହିତାଶ୍ୱ । ପୁଅଟିର ବୟସ ଆଠ ଦଶ ବର୍ଷ ହେବ । ଶୈବ୍ୟା ମଧ୍ୟ ହରିଶ୍ଚନ୍ଦ୍ରଙ୍କର ଉପଯୁକ୍ତ ସ୍ତ୍ରୀ । ଦୁଃଖୀର ଦୁଃଖ ଦେଖିଲେ ସେ କାନ୍ଦି ପକାଉଥିଲେ । ତେଣୁ ତାଙ୍କ ରାଜ୍ୟରେ କୌଣସି ଜଣେ ଲୋକ ମଧ୍ୟ ଦରିଦ୍ର ନ ଥିଲା । ସ୍ୱାମୀ ବିଶ୍ୱାମିତ୍ରଙ୍କୁ ସମସ୍ତ ସମ୍ପତ୍ତି ଦାନ କରିଥିବା କଥା ଶୁଣି ସେ ଭାରି ଖୁସି ହେଲେ ଓ ସ୍ୱାମୀଙ୍କ ସଙ୍ଗରେ ବଣକୁ ବାହାରିଲେ ।

ଏହି ସମୟରେ ବିଶ୍ୱାମିତ୍ର କହିଲେ "ତୁମେ ଦାନ ଦେଲ ଦକ୍ଷିଣା ତ ଦେଇ ନାହିଁ । ଦକ୍ଷିଣା ନ ପାଇଲେ ମୁଁ ଦାନ ଗ୍ରହଣ କରିବି ନାହିଁ । ଶୀଘ୍ର ଦକ୍ଷିଣା ଦିଅ ।" ଏହା ଶୁଣି ହରିଶ୍ଚନ୍ଦ୍ର ଟିକିଏ ଚିନ୍ତା କରି କହିଲେ, "ହଁ ଠିକ୍ କଥା, ଆପଣ କିଛିଦିନ ଅପେକ୍ଷା କରନ୍ତୁ, ମୁଁ ଆପଣଙ୍କୁ ଦକ୍ଷିଣା ଦେବି । ମୋର ବର୍ତ୍ତମାନ କିଛି ନାହିଁ । ତେବେ ମୁଁ, ମୋ ସ୍ତ୍ରୀ ଓ ପୁଅ ତିନି ଜଣ ଅଛୁଁ । ଆମମାନଙ୍କର ଘରେ ଗୃହକର୍ମ କଲେ ସେ ଆମକୁ କିଛି ଟଙ୍କା ଦେବେ । ସେହି

ଟଙ୍କା ଅଣି ଆପଣଙ୍କୁ ଦକ୍ଷିଣ ରୂପେ ଦେବ ।" ଏହା କହି ରଜା ବଣକୁ ଗଲେ । ସ୍ତ୍ରୀ ପୁତ୍ର ଓ ନିଜକୁ କିଣିବାପାଇଁ ଅନେକ ଲୋକଙ୍କୁ କହିଲେ, ମାତ୍ର କେହି ତହିଁରେ ରାଜି ହେଲେ ନାହିଁ । ଏଣେ ବିଶ୍ୱାମିତ୍ର ବୁଢାଦିନ ଛଡ଼ା ଗୃହଦିନ ଛଡ଼ା ବଣକୁ ଯାଇ ତାଙ୍କ ଦକ୍ଷିଣା ମାଗୁଥାନ୍ତି ଏବଂ ରାଗିଯାଇ କଥାବାର୍ତ୍ତା କରୁଥାନ୍ତି । ହରିଶ୍ଚନ୍ଦ୍ର କଣ କରିବେ ?

ସେ ଦେଶରେ କେହି ତାଙ୍କୁ ଗୃହବାର ରଖି ଟଙ୍କା ଦେଲେ ନାହିଁ । ତେଣୁ ସେ ସ୍ତ୍ରୀ ପୁତ୍ରଙ୍କୁ ସଙ୍ଗରେ ନେଇ କାଶୀ ସହରକୁ ବାହାରିଲେ । କାଶୀ ସେଠାରୁ ଅନେକ ବାଟ, ଅନେକ ଦିନ ଚାଲି ଚାଲି କାଶୀରେ ପହଞ୍ଚିଲେ । ବିଶ୍ୱାମିତ୍ର ମଧ୍ୟ ତାଙ୍କ ଦକ୍ଷିଣା ପାଇବା ପାଇଁ ତାଙ୍କ ସାଙ୍ଗେ ସାଙ୍ଗେ କାଶୀ ଆସିଲେ ।



ବହୁ ଚେଷ୍ଟାରେ ତାଙ୍କ ସ୍ତ୍ରୀ ଶୈବ୍ୟା ଓ ପୁଅ ରୋହିତାଶ୍ୱଙ୍କୁ ଜଣେ ବ୍ରାହ୍ମଣ ଗୃହକାର କରିବାକୁ ରାଜିହୋଇ ତାଙ୍କୁ କିଛି ଧନ ଦେଲେ ।

ହରିଶ୍ଚନ୍ଦ୍ର ସାଙ୍ଗେ ସାଙ୍ଗେ ସେତକ ବିଶ୍ୱାମିତ୍ରଙ୍କୁ ଦେଲେ । ବିଶ୍ୱାମିତ୍ର ଅଦ୍ଭୁତ ଦକ୍ଷିଣା ଦାବୀ କଲେ । ରାଜା ଆପଣଙ୍କୁ ବିକି ଶୀଘ୍ର ବାକି ଦକ୍ଷିଣା ଦେବାକୁ କହିଲେ । ତାଙ୍କୁ କିଣିବାପାଇଁ ସେ ଅନେକ ଲୋକଙ୍କ ପାଖରେ ପ୍ରାର୍ଥନା କଲେ, କିନ୍ତୁ କେହି ସେଥିରେ ରାଜି ହେଲେ ନାହିଁ । ଶେଷରେ ଜଣେ ହାଡ଼ିକୁ କହିଲେ । ହାଡ଼ି କହିଲା, "ମୋର ଜଣେ ଚାକର ଲୋଡ଼ା, ଏ କାଶୀ ସହରରେ ମୋର ଅନେକ ମଶାଣି ଅଛି । ଯେଉଁମାନେ ମଶାଣିକି ମଡ଼ା ପୋଡ଼ିବାକୁ ଯାଆନ୍ତି, ସେମାନଙ୍କଠାରୁ ମୁଁ କର ପାଏଁ । କିନ୍ତୁ ମୋ ପାଖରେ ଲୋକ ନ ଥିବାରୁ ମୁଁ ସବୁ ମଡ଼ାଙ୍କ ପଇସା ଅସୁଲ କରି ପାରେ ନାହିଁ । ଯେବେ ତୁମେ ମଶାଣିରେ ରହି ମଡ଼ା ପଇସା ଅସୁଲ କରିବ, ତେବେ ମୁଁ ତୁମ୍ଭକୁ ଧନଦେଇ କିଣିବି ।" ହରିଶ୍ଚନ୍ଦ୍ର ସେଥିରେ ରାଜି ହେଲେ, ହାଡ଼ି ବହୁତ ଟଙ୍କା ଦେଲା । ସେ ଟଙ୍କା ହରିଶ୍ଚନ୍ଦ୍ର ସାଙ୍ଗେ ସାଙ୍ଗେ ବିଶ୍ୱାମିତ୍ରଙ୍କୁ ଦେବାରୁ ସେ ଭାରି ଖୁସି ହୋଇ ଅଯୋଧ୍ୟାକୁ ଫେରିଯାଇ ସେଠାରେ ରାଜା ହେଲେ ।

ହାଡ଼ି କଥା ଅନୁସାରେ ହରିଶ୍ଚନ୍ଦ୍ର ଗୋଟାଏ ମଶାଣିରେ ରହିଲେ । ସବୁବେଳେ ସେ ମଶାଣିରେ ମଡ଼ାର ପୋଡ଼ା ଲାଗିଥାଏ । କେତେବେଳେ ହେଲେ ଜୁଇରୁ ନିଆଁ ଲିଭେ ନାହିଁ । ଭୟଙ୍କର ଦୁର୍ଗନ୍ଧ । ଦିନ ରାତି ସବୁବେଳେ ମଶାଣି ପାଉଁଶ ଓ ଧୂଆଁରେ ବୁଲି ବୁଲି ତାଙ୍କ ଦେହ କଳା ପଡ଼ିଗଲା । ହାଡ଼ି ତାଙ୍କ କାମ ଦେଖି ଭାରି ଖୁସି ହେଲା । ଏହିପରି କେତେ କାଳ କଟିଗଲା । ତେଣେ ଶୈବ୍ୟା ସେ ବ୍ରାହ୍ମଣ ଘରେ ଚାକରାଣୀ କାମ କରୁଥାଆନ୍ତି । ଦିନେ ତାଙ୍କ ପୁଅ ରୋହିତାଶ୍ୱଙ୍କୁ ଗୋଟାଏ ସାପ କାମୁଡ଼ି ଦେଲା । ଗୁହୁଁ ଗୁହୁଁ ପିଲାଟିର ପ୍ରାଣବାୟୁ

ବାହାରିଗଲା । ଶୈବ୍ୟା ଭାରି କାନ୍ଦିଲେ । ତାଙ୍କ ସ୍ୱାମୀଙ୍କ ଖବର ତାଙ୍କୁ ଆଦୌ ଜଣା ନ ଥିଲା । ସେଠାରେ ତାଙ୍କର ନିଜର ହୋଇ ଆଉ କେହି ନ ଥିଲେ । ବାସୀ ମଡ଼ା ହେଲେ ବ୍ରାହ୍ମଣ ରାଗିବ,—ତେଣୁ ସେଦିନ ସନ୍ଧ୍ୟାବେଳେ ମଲାପୁଅକୁ କାଖ କରି ସେ ମଶାଣିକୁ ପୋଡ଼ିବାକୁ ନେଇଗଲେ । ପୁଅକୁ ମଶାଣିରେ ରଖିଦେଇ ସେଠାରେ ବଡ଼କରେ ଧୂଣି କାନ୍ଦିଲେ. କାନ୍ଦ ଶୁଣି ହରିଶ୍ଚନ୍ଦ୍ର ତାଙ୍କ ପାଖକୁ ଆସି ମଶାଣିରେ ମୁର୍ଦ୍ଦାର ପୋଡ଼ିବାର କର ମାଗିଲେ । କେହି କାହାକୁ ଚିହ୍ନି ପାରିଲେ ନାହିଁ । ଶୈବ୍ୟା ଶେଷରେ କହିଲେ, "ମୋଠାରେ କିଛି ନାହିଁ । ମୁଁ ଚାକରାଣୀ କାମ କରେଁ । ମୋତେ କର ଛାଡ଼ିଦିଅ ।" ଏହିପରି କଥାବାର୍ତ୍ତା ହେଉ ହେଉ ସେ ଦୁହେଁ ଚିହ୍ନା ଚିହ୍ନି ହେଲେ । ପୁଅ ଓ ସ୍ତ୍ରୀର ଅବସ୍ଥା ଦେଖି ହରିଶ୍ଚନ୍ଦ୍ରଙ୍କୁ ଭାରି କାନ୍ଦ ମାଡ଼ିଲା । କିନ୍ତୁ କଅଣ କରିବେ ? ତାଙ୍କର ପ୍ରଭୁ ହାଡ଼ିକୁ ନ କହି କପରି ବା ବିନା କରରେ ସେ ମଶାଣିରେ ମୁର୍ଦ୍ଦାର ପୋଡ଼ିବାକୁ ଅନୁମତି ଦେବେ, ଏହା ଭାବି ସେ ତାଙ୍କ ହାଡ଼ିପତିକୁ ଦୌଡ଼ିଲେ । ହାଡ଼ିଠାରୁ ଅନୁମତି ଆଣି ମଶାଣିରେ ପହଞ୍ଚି ଦେଖିଲେ ଯେ ବିଶ୍ୱାମିତ୍ର ଋଷି ସେଠାରେ ଆସି ପହଞ୍ଚି ଅଛନ୍ତି । ରାଜାଙ୍କ ଦୁଃଖ ଦେଖି ତାଙ୍କ ମନରେ ଦୟା ହେଲା । ସେ ଜଣେ ଋଷି, ତାଙ୍କୁ ବହୁତ ମନ୍ତ୍ର ଓ ଔଷଧ ଜଣାଥିଲା । ସେ ତହୁଁ ଔଷଧ ଦେଇ ରୋହିତାଶ୍ୱଙ୍କୁ ବଞ୍ଚାଇ ଦେଲେ । ଶୈବ୍ୟା ଓ ହରିଶ୍ଚନ୍ଦ୍ର ଏହା ଦେଖି ଭାରି ଖୁସି ହେଲେ । ଏହି ସମୟରେ ବିଶ୍ୱାମିତ୍ର କହିଲେ, "ଦେଖ, ହରିଶ୍ଚନ୍ଦ୍ର ! ମୁଁ ସନ୍ନ୍ୟାସୀ, ମୋର ରାଜ୍ୟ ଓ ଧନରେ କିଛି ଲୋଡ଼ା ନାହିଁ । କେବଳ ତୁମର ସାଧୁ-ପଣିଆ ଓ ଦାତାପଣିଆ ପରଖିବା ପାଇଁ ତୁମଠାରୁ ରାଜ୍ୟ, ସମସ୍ତ ନେଇଥିଲି । ତୁମ ମନ ବଡ଼ସାଧୁ ବୁଝିଲି ଯେ, ତୁମେ ପ୍ରକୃତରେ

ସାଧୁଲୋକ ଓ ଦାତା, ଏବେ ସ୍ୱର୍ଗକୁ ତୁମେ ଯାଇ ସେଠାରେ ରାଜୁତି କର । ଏହି ଟଙ୍କା ନିଅ, ବ୍ରାହ୍ମଣଠାରୁ ଓ ହାଡ଼ିଠାରୁ ଯେତେ ଟଙ୍କା ଆଣିଥିଲ ତାକୁ ଫେରାଇ ଦିଅ । ତୁମେ ନିଶ୍ଚେ ସ୍ୱର୍ଗ ପାଇବ ଓ ଏ ପୃଥିବୀରେ ଯେତେ ଦିନ ଥିବ ଯାଏ ତୁମର କୀର୍ତ୍ତି ପୃଥିବୀରେ ରହିବ । ଏହା କହି ବିଶ୍ୱାମିତ୍ର କୁଆଡ଼େ ଚାଲିଗଲେ । ବ୍ରାହ୍ମଣଙ୍କୁ ଓ ହାଡ଼ିକୁ ଟଙ୍କା ଫେରାଇ ଦେଇ ହରିଶ୍ଚନ୍ଦ୍ର ସ୍ତ୍ରୀ ଓ ପୁଅଙ୍କୁ ନେଇ ତାଙ୍କ ରାଜ୍ୟକୁ ଫେରିଲେ । ହରିଶ୍ଚନ୍ଦ୍ର କାଶୀରେ ଯେଉଁ ମଶାଣିରେ ପହରୀ ହୋଇ ଥିଲେ ଏବେ ସେ ମଶାଣିକୁ 'ହରିଶ୍ଚନ୍ଦ୍ର ଘାଟ' କହନ୍ତି । ଯେଉଁମାନେ ଆମ ଦେଶରୁ କାଶୀ ବୁଲିବାକୁ ଯାଆନ୍ତି, ସେମାନେ ସମସ୍ତେ ହରିଶ୍ଚନ୍ଦ୍ର ଘାଟ ଦେଖି ଆସନ୍ତି ।

## ପ୍ରଶ୍ନ

୧ । ବିଶ୍ୱାମିତ୍ର କି ହେତୁରୁ ହରିଶ୍ଚନ୍ଦ୍ରଙ୍କୁ ଏତେ କଷ୍ଟ ଦେଇଥିଲେ ?

୨ । ହରିଶ୍ଚନ୍ଦ୍ରଙ୍କ ଭଳି ଆଉ ଜଣେ ପ୍ରସିଦ୍ଧ ପ୍ରାଚୀନ ଦାତାଙ୍କ ନାମ କହ ।

୩ । ଶୈବ୍ୟାଙ୍କଠାରେ କି କି ଗୁଣ ଥିଲା ବୋଲି ଜଣାଯାଏ ?

# ବୁଦ୍ଧଦେବ

ଆମ ଓଡ଼ିଶାର ଉତ୍ତରରେ ନେପାଳ ବୋଲି ଗୋଟିଏ ରାଜ୍ୟ ଅଛି । ହିମାଳୟ ପର୍ବତମାଳାରେ କେତେକ ଅଂଶ ଏହି ରାଜ୍ୟରେ ଅବସ୍ଥିତ । ସେହି ନେପାଳ ରାଜ୍ୟର କପିଳବସ୍ତୁ ନାମରେ ଗୋଟିଏ ନଗର ଥିଲା । ସେଠାରେ ପ୍ରାୟ ଅଢେଇ ହଜାର ବର୍ଷତଳେ ଶାକ୍ୟବଂଶରେ ବୁଦ୍ଧଦେବ ଜନ୍ମ ଗ୍ରହଣ କରିଥିଲେ । ପିଲାଦିନେ ତାଙ୍କର ନାମ ଥିଲା ସିଦ୍ଧାର୍ଥ । ତାଙ୍କ ପିତାଙ୍କ ନାମ ଥିଲା ଶୁଦ୍ଧୋଦନ । ଜନ୍ମର ସାତଦିନ ପରେ ତାଙ୍କର ମା ମାୟାଦେବୀ ମରିଯିବାରୁ ତାଙ୍କ ମାଉସୀମା ଗୌତମୀ ତାଙ୍କୁ ବଢ଼ାଇଥିଲେ । ରାଜାଙ୍କର ଏକମାତ୍ର ପୁଅ, ତାଙ୍କ ଅନ୍ତେ ସିଂହାସନରେ ବସିବେ, ତେଣୁ ପିଲାଦିନୁ ତାଙ୍କ ବାପା ନାନା ଶାସ୍ତ୍ର ଓ ଯୁଦ୍ଧବିଦ୍ୟା ଶିକ୍ଷା ଦେବାପାଇଁ ଅନେକ ଶିକ୍ଷକ ନିଯୁକ୍ତ କରିଥିଲେ । ସେ ଭାରି ବୁଦ୍ଧିମାନ୍ ଥିଲେ । ଅଳ୍ପ ଦିନରେ ଅନେକ ପାଠ ପଢ଼ିଲେ । ଶର ମାରିବାରେ ଓ ଖଣ୍ଡା ଖେଳରେ ସେତେବେଳେ ଅନ୍ୟ କେହି ତାଙ୍କ ସମକକ୍ଷ ନ ଥିଲେ । କିନ୍ତୁ ହେଲେ କଣ ହେବ । ଏ ସବୁ ବୁଦ୍ଧଦେବଙ୍କୁ ଆଦୌ ଭଲ ଲାଗୁ ନ ଥିଲା । ବେଳେ ବେଳେ ଲୋକେ ଶିକାର କରିବାପାଇଁ ତାଙ୍କୁ ବଣକୁ ଡାକି ନେଉଥିଲେ, କିନ୍ତୁ ଜୀବ ମାରିବା ଦୂରରେ ଥାଉ କୌଣସି ଜୀବ ପ୍ରତି ଅତ୍ୟାଚାର ହେବା ଦେଖିଲେ ସେ କାନ୍ଦି ପକାଉଥିଲେ । ଏକୁଟିଆ ହୋଇ ବସି ସେ ସବୁବେଳେ କେତେ କଣ ଭାବୁଥିଲେ । ପିଲାଦିନୁ ପୁଅର ଏହି ସବୁ ଭାବ ଦେଖି ତାଙ୍କ ବାପା ଶୁଦ୍ଧୋଦନଙ୍କ ମନରେ ଭାରି ଭୟ ହେଲା । ସେ ଭାବିଲେ, 'ବୋଧହୁଏ ତାଙ୍କ ପୁଅ ସନ୍ନ୍ୟାସୀ ହୋଇ ସଂସାର ଛାଡ଼ି ଚାଲିଯିବ ।' ତେଣୁ ଅନ୍ୟ ଦେଶର ଗୋଟିଏ ସୁନ୍ଦରୀ ରାଜକନ୍ୟାଙ୍କ ସଙ୍ଗରେ ତାଙ୍କୁ ବିବାହ କରି ଦେଲେ । ତାଙ୍କ ସ୍ତ୍ରୀ ନାମ ଯଶୋଧାରା ।

ବିବାହ ହୋଇଗଲା । କିଛି ଦିନ କଟିଗଲା । ମାତ୍ର ସିଦ୍ଧାର୍ଥଙ୍କ ମନ ସଂସାରରେ ଲାଗିଲା ନାହିଁ । ଦିନେ ସେ ବୁଲିବାକୁ ଯାଉଥିଲେ, ସାଙ୍ଗରେ ଥିଲେ ସାରଥି ଛନ୍ଦକ । ଏହି ସମୟରେ ସେ ଦେଖିଲେ, ଜଣେ ବୁଢ଼ାଲୋକ ବାଡ଼ି ଖଣ୍ଡିଏ ଧରି କମ୍ପି କମ୍ପି ବାଟରେ ଯାଉଅଛି । ସିଦ୍ଧାର୍ଥ ସାରଥିକୁ ପଚାରିଲେ, "ଏ କିଏ ? ଏପରି କାହିଁକି ଚାଲୁଅଛି ?" ଛନ୍ଦକ ଉତ୍ତର ଦେଲେ, "ସଂସାରରେ ସମସ୍ତେ ବୁଢ଼ାହୋଇ ଦିନେ ଏହିପରି ହେବେ ।" ଆଉଦିନେ ସେହିପରି ଦେଖିଲେ, କେତେ ଲୋକ ମିଶି ଗୋଟିଏ ମୃତବ୍ୟକ୍ତିକୁ ଶ୍ମଶାନକୁ ନେଉଅଛନ୍ତି । ସିଦ୍ଧାର୍ଥ ପଚାରିବାରୁ ଛନ୍ଦକ କହିଲେ, "ସମସ୍ତେ ସଂସାରରେ ଏହିପରି ଦିନେ ମରିବେ ।" ଥରେ ଜଣେ ରୋଗୀକୁ ଦେଖି ତା କଥା ପଚାରିବାରୁ ସିଦ୍ଧାର୍ଥ ସେହିପରି ଉତ୍ତର ପାଇଥିଲେ । ଆଉ ଦିନେ ଜଣେ ସନ୍ନ୍ୟାସୀ ତାଙ୍କ ଆଖିରେ ପଡ଼ିଲେ । ଧୀର ପ୍ରଶାନ୍ତ ମୂର୍ତ୍ତି, ମୁହଁ ହସ ହସ; ଗେରୁଆ ଲୁଗା ଖଣ୍ଡେ ପିନ୍ଧିଛନ୍ତି, ହାତରେ ଭିକ୍ଷାପାତ୍ର । କୁମାର ପଚାରିଲେ, "ଛନ୍ଦକ ଏ କିଏ ?" ଛନ୍ଦକ କହିଲେ "କୁମାର, ଏ ଜଣେ ସନ୍ନ୍ୟାସୀ, ସଂସାରରେ ଏହାଙ୍କର ଲୋଭ ନାହିଁ । ସବୁ ତ୍ୟାଗ କରି ପରମ ସୁଖରେ ଅଛନ୍ତି ।" ଏହି କଥା ଶୁଣି ସିଦ୍ଧାର୍ଥ ସଂସାର ଛାଡ଼ି ସନ୍ନ୍ୟାସୀ ହେବାକୁ ସ୍ଥିର କଲେ ।

ସେତେବେଳେ ସିଦ୍ଧାର୍ଥଙ୍କର ବୟସ ପ୍ରାୟ ୨୯ ବର୍ଷ ହେବ । ଏଥିମଧ୍ୟରେ ତାଙ୍କର ଗୋଟିଏ ପୁତ୍ର ହୋଇଥିଲା । ଅଧ ରାତିରେ ପୃଥିବୀ ନିସ୍ତବ୍ଧ । ଯଶୋଧାରା ପୁଅଟିକୁ କୋଳରେ ଧରି ଘୋର ନିଦରେ ଶୋଇଅଛନ୍ତି । କୌଣସି ଲୋକ ଜାଗ୍ରତ ନାହାନ୍ତି । ସିଦ୍ଧାର୍ଥ ଗୋଟାଏ ଘୋଡ଼ାରେ ବସି ଛନ୍ଦକକୁ ସଙ୍ଗରେ ଧରି

ସେହି ଅନ୍ଧାର ରାତିରେ ସଂସାର ତ୍ୟାଗ କଲେ । ରାତି ରାତି ଚାଲିଲେ, ସକାଳ ହେଲା ବେଳକୁ ସେ ଅନେକ ଦୂର ଚାଲି ଯାଇଥିଲେ । ସକାଳେ ଗୋଟିଏ ନିର୍ଜନ ସ୍ଥାନରେ ଘୋଡ଼ାରୁ ଓହ୍ଲାଇ ଯେଉଁ-ସବୁ ମୂଲ୍ୟବାନ ଲୁଗା ଓ ଅଳଙ୍କାର ଦେହରେ ଥିଲା ସେଗୁଡ଼ିକ ଛନ୍ଦକୁ ଦେଇ ମୁଣ୍ଡ ଲଣ୍ଡା କରି କୌପୁନୀ ମାରି ଭିଖାରି ବେଶରେ ବୁଲିବାକୁ ବାହାରିଲେ । ଛନ୍ଦକ ସେ ବେଶ ଦେଖି ଭାରି କାନ୍ଦିଲା । କିନ୍ତୁ ସିଦ୍ଧାର୍ଥ ତାକୁ ବୁଝାବୁଝି କରି ଘରକୁ ଫେରାଇଦେଲେ । ଘରେ ସମସ୍ତେ ଏ କଥା ଶୁଣି ଭାରି କାନ୍ଦିଲେ ।

ଭିଖାରି ବେଶରେ ସିଦ୍ଧାର୍ଥ ନାନା ସ୍ଥାନରେ ବୁଲିଲେ ଓ ଅନେକ ବଡ଼ ବଡ଼ ପଣ୍ଡିତଙ୍କ ଶିଷ୍ୟ ହୋଇ ପାଠ ପଢ଼ିଲେ । ଶେଷରେ ଗୋଟିଏ ବଣରେ ଛଅ ବର୍ଷକାଳ ତପସ୍ୟା କଲେ । ତପସ୍ୟା ଶେଷରେ ସେ ପ୍ରକୃତ ତତ୍ତ୍ୱଜ୍ଞାନ ଲଭିଅଛନ୍ତି ବୋଲି ବୁଝିପାରି ତାହା ଲୋକମାନଙ୍କୁ ବୁଝାଇବାକୁ ବାହାରିଲେ । ସେହି ଦିନଠାରୁ ତାଙ୍କର ନାମ ହେଲା ବୁଦ୍ଧଦେବ ଓ ସେ ଯେଉଁ ଧର୍ମମତ ପ୍ରଚାର କଲେ ତାହାର ନାମ ହେଲା ବୌଦ୍ଧଧର୍ମ । ବୁଦ୍ଧଦେବଙ୍କ ମତରେ ସଂସାର ଦୁଃଖରେ ପୂର୍ଣ୍ଣ । ଏହି ଦୁଃଖର କାରଣ [illegible] । ଯେଉଁ ଲୋକ



ବିଷୟସ୍ନେହକୁ ତ୍ୟାଗ କରିପାରିବ, ସେ ଦୁଃଖରୁ ରକ୍ଷା ପାଇଯିବ । ସର୍ବଦା ସତ୍ୟ କହିଲେ, ଭଲ ଆଚରଣ କଲେ ଓ ଭଲ କାମ କରି ମନକୁ ଦୃଢ଼ କଲେ ଦୁଃଖରୁ ରକ୍ଷା ମିଳେ ।

ବୁଦ୍ଧଦେବ କାଶୀରେ ସର୍ବପ୍ରଥମେ ତାହାଙ୍କ ଧର୍ମମତ ପ୍ରଚାର କରିଥିଲେ । ପାଞ୍ଚଜଣ ତାଙ୍କର ଶିଷ୍ୟ ହେଲେ । ସେମାନେ ଚାରିଆଡ଼େ ବୁଦ୍ଧଦେବଙ୍କ କଥା ପ୍ରଚାର କଲେ । ଶୁଣି ଶୁଣି ହଜାର ହଜାର ଲୋକ ତାଙ୍କୁ ଦେଖିବାକୁ ଓ ତାଙ୍କ ଉପଦେଶ ଶୁଣିବାକୁ ଦାଉଡ଼ିଲେ । ଅଳ୍ପଦିନ ମଧ୍ୟରେ ଭାରତବର୍ଷର ଚାରିଆଡ଼େ ବୌଦ୍ଧଧର୍ମ ବ୍ୟାପିଗଲା । ସେତେବେଳେ ବିମ୍ବିସାର ନାମରେ ଜଣେ ରାଜା ରାଜଗୃହରେ ରାଜତ୍ୱ କରୁଥିଲେ । ସେ ପ୍ରଥମେ ବୌଦ୍ଧଧର୍ମ ଗ୍ରହଣ କଲେ । ଏହି ସମୟରେ ବୁଦ୍ଧଦେବ ନିଜ ଜନ୍ମସ୍ଥାନ କପିଳବାସ୍ତୁକୁ ଯାଇ ତାଙ୍କ ବାପା ଶୁଦ୍ଧୋଦନ, ସ୍ତ୍ରୀ ପୁଅ ଓ ପରିବାରର ଅନ୍ୟ ସମସ୍ତଙ୍କୁ ଦେଖିଲେ । ସେଠାରେ ସେ ଧର୍ମୋପଦେଶ ଦେଲେ ଏବଂ ଅନେକ ଲୋକ ତାଙ୍କର ଶିଷ୍ୟ ହେଲେ ।

ସେ ଦେହାନ୍ତରୁ ପ୍ରାୟ ୪୫ ବର୍ଷ ଭାରତର ନାନା ସ୍ଥାନରେ ବୁଲି ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଶେଷରେ କୁଶୀନଗର ଆଡ଼କୁ ଯାଇଁ ତାଙ୍କ ହିରଣ୍ୟବତୀ ନାମକ ନଦୀକୂଳରେ ଗୋଟାଏ ଶାଳବୃକ୍ଷ ମୂଳରେ ବିଶ୍ରାମ କଲେ । ସେତେବେଳେ ଅନେକ ଶିଷ୍ୟ ତାଙ୍କ ଚାରିପାଖରେ ବସିଥିଲେ । ସେମାନଙ୍କୁ ଉପଦେଶ ଦେଇ ଦେଇ ତାଙ୍କର ଆତ୍ମା ଶରୀର ତ୍ୟାଗ କରି ଚାଲିଗଲା । ବୁଦ୍ଧଦେବ ମର୍ତ୍ତ୍ୟଦେହ ତ୍ୟାଗ କଲେ । ପୃଥିବୀରୁ ଆଲୁଅ ଲିଭିଗଲା ।

ବୁଦ୍ଧଦେବଙ୍କ ଦେହତ୍ୟାଗ ପରେ ଏ ଦେଶରେ ପ୍ରାୟ ଏକ ହଜାର ବର୍ଷ ତାଙ୍କ ଧର୍ମ ଚଳିଲା । ସେ କାଳରେ ବହୁଲକ୍ଷ ଲୋକ ତାଙ୍କ ଧର୍ମ ଗ୍ରହଣ କରିଥିଲେ । ଅନେକ ରାଜା ବୌଦ୍ଧଧର୍ମ ଗ୍ରହଣ କରି ଭାରତ ଛଡ଼ା ଅନ୍ୟ ଦେଶରେ ମଧ୍ୟ ସେ ଧର୍ମ ପ୍ରଚାର କରାଇଥିଲେ । ଏବେ ଭାରତରେ ବୌଦ୍ଧଧର୍ମାବଲମ୍ବୀ ଲୋକ ଅତି ଅଳ୍ପ ଅଛନ୍ତି, ମାତ୍ର ଭାରତର ବାହାରେ ଚୀନ, ଜାପାନ, ତିବ୍ବତ ପ୍ରଭୃତି ଦେଶର ଲୋକମାନେ ବୌଦ୍ଧ-ଧର୍ମାବଲମ୍ବୀ ।

## ପ୍ରଶ୍ନ

୧ । ସଂସାର ଛାଡ଼ି ବୁଦ୍ଧ କାହିଁକି ସନ୍ନ୍ୟାସୀ ହୋଇ ଯାଇଥିଲେ ?

୨ । ରାଜା ହୋଇ ରହିବାଠାରୁ ସନ୍ନ୍ୟାସୀ ହେବା କାହିଁକି ଭଲ ?

୩ । ବୁଦ୍ଧଦେବ ଯେଉଁ ଧର୍ମ ପ୍ରଚାର କରିଥିଲେ ତାହାର ସାରମର୍ମ କଅଣ ?

୪ । ଆମ ଓଡ଼ିଶାର କେଉଁ କେଉଁ ସ୍ଥାନରେ ବୌଦ୍ଧକୀର୍ତ୍ତି ଅଛି ?

# ଆଲେକ୍ଜାଣ୍ଡାର

ଆମ ଭାରତବର୍ଷର ଉତ୍ତର-ପଶ୍ଚିମ ଦିଗରେ ବହୁଦୂରରେ ଇଉରୋପ ମହାଦେଶ । ସେ ଦେଶରେ ଗ୍ରୀସ୍ ନାମରେ ଗୋଟିଏ ଦେଶ ଅଛି । ଗ୍ରୀସ୍ ଦେଶ ପୂର୍ବକାଳରେ ଭାରି ଉନ୍ନତ ଥିଲା ଏବଂ ସେ ଦେଶର ବଡ଼ ବଡ଼ ଯୋଦ୍ଧାମାନେ ପୃଥିବୀର ଅନେକ ଦେଶକୁ ଯାଇ ଦେଶ ଜୟ କରୁଥିଲେ । ଆଲେକ୍ଜାଣ୍ଡାର ନାମରେ ସେ ଦେଶରେ ଜଣେ ବଡ଼ ରାଜା ଥିଲେ । ସେ ପୂର୍ବକାଳରେ ଦେଶ ଜୟ କରି କରି ଆମ ଭାରତରେ ଆସି ପହଞ୍ଚିଥିଲେ । ସେତେବେଳେ ଲୋକେ ଭଲ କରି ଜାହାଜ ଚଳାଇ ଜାଣି ନ ଥିଲେ ଏବଂ ତାଙ୍କ ଦେଶରୁ ଆମ ଦେଶଯାଏ ସମୁଦ୍ରରେ ବାଟ ଜାଣି ନ ଥିଲେ । ଉଡ଼ାଜାହାଜ ମଧ୍ୟ ସେତେବେଳେ ନ ଥିଲା । ଭାରତବର୍ଷର ପୂର୍ବ, ଉତ୍ତର ଓ ପଶ୍ଚିମ ପାଖରେ ବଡ଼ ବଡ଼ ପର୍ବତ ରହିଅଛି । ସେ ପର୍ବତକୁ ଡେଇଁ ଅନ୍ୟ ଦେଶର ଲୋକେ ସହଜରେ ଏ ଦେଶକୁ ଆସି ପାରନ୍ତି ନାହିଁ । ଭାରତର ଦକ୍ଷିଣ, ପୂର୍ବ ଓ ପଶ୍ଚିମରେ ମଧ୍ୟ ସମୁଦ୍ର ଘେରି କରି ରହିଅଛି । ତେବେ ଆଲେକ୍ଜାଣ୍ଡାର କେଉଁ ବାଟେ ଏ ଦେଶକୁ ଆସିଥିବେ ? ଭାରତର ଉତ୍ତର ପଶ୍ଚିମ କୋଣରେ ପଞ୍ଜାବ ପ୍ରଦେଶ; ପଶ୍ଚିମରେ ଭାରତ ବାହାରେ ପାରସ୍ୟ ଆଫଗାନସ୍ଥାନ, ବେଲୁଚସ୍ଥାନ ନାମରେ ମୁସଲମାନମାନଙ୍କ ଦେଶ । ପଞ୍ଜାବ ଓ ସେହି ସବୁ ଦେଶ ମଧ୍ୟରେ ହିନ୍ଦୁକୁଶ ନାମରେ ଉଚ୍ଚ ପର୍ବତ ଅଛି । ସେହି ପର୍ବତ ଭିତରେ କେତେଗୋଟି ଘାଟି ଅଛି । ସେହି ଘାଟିର ନାଁ ଖାଇବାର ଘାଟି ଓ ବୋଲାନ ଘାଟି । ଆଲେକ୍ଜାଣ୍ଡାର ତାଙ୍କ ସୈନ୍ୟମାନଙ୍କୁ ନେଇ ସେହି ଘାଟିବାଟେ ଭାରତକୁ ଆସିଥିଲେ ।

ସେତେବେଳେ ପଞ୍ଜାବ ଭିତରେ ପଶ୍ଚିମ ଭାଗରେ କେତେ-
ଗୁଡ଼ିଏ ଛୋଟ ଛୋଟ ରାଜ୍ୟ ଥିଲା । ସେ ସବୁ ଦେଶର ଲୋକଙ୍କୁ ପରାସ୍ତ
କରି ଆଲେକ୍‌ଜାଣ୍ଡାର ଯୀଶୁଖ୍ରୀଷ୍ଟଙ୍କ ଜନ୍ମର ୩୨୭ ବର୍ଷ ପୂର୍ବେ
ସିନ୍ଧୁନଦୀ ପାରହୋଇ ତକ୍ଷଶିଳାରେ ପହଞ୍ଚିଲେ । ସେ ଦେଶର



ରାଜାଙ୍କୁ ପରାସ୍ତ କରି ଅଧୀନ କଲେ । ତା ପରେ ପୁରୁ ନାମକ
ଜଣେ ଭାରି ବଳବାନ୍ ରାଜାଙ୍କ ସଙ୍ଗେ ତାଙ୍କର ଯୁଦ୍ଧ ହେଲା ।

ପୁରୁ ଯୁଦ୍ଧରେ ପରାସ୍ତ ହୋଇ ବନ୍ଦୀ ହେଲେ। ସେତେବେଳେ ଆଲେକ୍‌ଜାଣ୍ଡ଼ାର ତାଙ୍କୁ ପଚାରିଲେ, "ତୁମ୍ଭେ ଆମ୍ଭଠାରୁ କି ପ୍ରକାର ବ୍ୟବହାର ଆଶା କର?" ପୁରୁ ଉତ୍ତର ଦେଲେ, "ରାଜାଙ୍କ ସଙ୍ଗେ ଯେପରି ବ୍ୟବହାର କରାଯାଏ, ଆପଣ ମୋ ସଙ୍ଗେ ସେହିପରି ବ୍ୟବହାର କରନ୍ତୁ।" ଏହା ଶୁଣି ଆଲେକ୍‌ଜାଣ୍ଡ଼ାର ଭାରି ଖୁସି ହୋଇ ତାଙ୍କୁ ମୁକ୍ତ ଦେଲେ ଓ ତାଙ୍କ ରାଜ୍ୟ ତାଙ୍କୁ ଫେରାଇ ଦେଲେ। ତା' ପରେ ଆଲେକ୍‌ଜାଣ୍ଡ଼ାର ପଞ୍ଜାବର ପୂର୍ବ ଅଞ୍ଚଳ ଆକ୍ରମଣ କରିବାକୁ ଇଚ୍ଛା କରୁଥିଲେ, ମାତ୍ର ତାଙ୍କର ସୈନ୍ୟମାନେ ବହୁତ ବାଟ ଚାଲି ଚାଲି ଆସି ଥିବାରୁ ଏକାବେଳକେ କ୍ଳାନ୍ତ ହୋଇ ପଡ଼ିଥିଲେ। ସେମାନେ ଆଉ ଆଗକୁ ଯିବାକୁ ମାନିଲେ ନାହିଁ। ତେଣୁ ଆଲେକ୍‌ଜାଣ୍ଡ଼ାର ବାଧ୍ୟହୋଇ ସେଠାରୁ ଫେରିଲେ। ଫେରିବାବେଳେ ସେ କେତେକ ସୈନ୍ୟଙ୍କୁ ଜାହାଜରେ ପଠାଇ ଦେଲେ। ଅବଶିଷ୍ଟ ସୈନ୍ୟଙ୍କୁ ନେଇ ବେଲୁଚିସ୍ଥାନ ବାଟେ ପାରସ୍ୟକୁ ଗଲେ। ସେଠାରୁ ବାବିଲୋନ୍ ବୋଲି ଏକ ରାଜ୍ୟ ଥିଲା। ସେଠାରେ ସେ ପ୍ରାୟ ୧୩ ବର୍ଷ ରାଜା ହୋଇ ପ୍ରାଣତ୍ୟାଗ କଲେ।

ଆଲେକ୍‌ଜାଣ୍ଡ଼ାରଙ୍କୁ ଆମ ଦେଶର ଲୋକେ ସିକନ୍ଦର ବାଦଶାହ ବୋଲି କହନ୍ତି। ତାଙ୍କ ଆଗରୁ ଇଉରୋପର ଅନ୍ୟ କୌଣସି ଲୋକ ଭାରତକୁ ଆସି ନ ଥିଲେ। ଆଲେକ୍‌ଜାଣ୍ଡ଼ାରଙ୍କ ସୈନ୍ୟମାନେ ନିଜ ଦେଶକୁ ଫେରିଯାଇ ପ୍ରଚାର କଲେ ଯେ ପୃଥିବୀରେ ଭାରତ ପରି ଧନପୂର୍ଣ୍ଣ ଦେଶ ଅତି ଅଳ୍ପ ଅଛି ଓ ସେ ଦେଶର ଲୋକେ ଭାରି ଗୁଣବାନ୍ ଥାଆନ୍ତି, ତେଣୁ ଇଉରୋପ ମହାଦେଶର ଲୋକେ ଆମ ଦେଶ ଲୋକଙ୍କ ସଙ୍ଗେ ନାନା ପ୍ରକାର ସମ୍ବନ୍ଧ ରଖିବାକୁ ଚେଷ୍ଟା କଲେ। ଏହି ଭାବରେ ଭାରତ ସଙ୍ଗେ ଇଉରୋପର ପ୍ରଥମ ସମ୍ବନ୍ଧ ସ୍ଥାପିତ ହେଲା।

### ପ୍ରଶ୍ନ

୧। ଆଲେକ୍‌ଜାଣ୍ଡାର କିଏ ଓ ସେ କେବେ ଭାରତକୁ ଆସିଥିଲେ ?

୨। ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ ଦ୍ୱାରା ଆମ ଭାରତର ଉପକାର ହୋଇଥିଲା, ନା ଅପକାର ହୋଇଥିଲା ? କାରଣ ସହିତ ଉତ୍ତର ଦିଅ ।

୩। ପୁରୁ କିଏ ? ସେ ଆଲେକ୍‌ଜାଣ୍ଡାରଙ୍କୁ ଯେଉଁ ଉତ୍ତର ଦେଇଥିଲେ, ତହିଁରୁ ତାଙ୍କର କେଉଁ ଗୁଣର ପରିଚୟ ମିଳେ ?

—***—

## ଚାଣକ୍ୟ

ଆଜିକାଲି ଯେଉଁ ପ୍ରଦେଶକୁ ବିହାର କୁହାଯାଏ, ଆଗେ ସେ ପ୍ରଦେଶର ନାମ ଥିଲା ମଗଧ । ବୁଦ୍ଧଦେବଙ୍କ ପରେ ଉତ୍ତର ଭାରତର ବୌଦ୍ଧଧର୍ମ ଖୁବ୍ ପ୍ରବଳ ଥିଲା । ଅନେକ ରାଜା ବୌଦ୍ଧଧର୍ମ ଗ୍ରହଣ କରିଥିଲେ । ସେମାନଙ୍କ ଦେଖାଦେଖି ପ୍ରଜାମାନେ ମଧ୍ୟ ବୌଦ୍ଧ-ଧର୍ମରେ ଦୀକ୍ଷିତ ହୋଇଥିଲେ । କିନ୍ତୁ ପୂର୍ବକାଳରୁ ଏ ଦେଶରେ ଯେଉଁ ବୈଦିକଧର୍ମ ଚଳୁଥିଲା, ସେ ଧର୍ମ ଏ ଦେଶରୁ ଲୋପ ପାଇ ନ ଥିଲା । ବ୍ରାହ୍ମଣମାନେ ସେମାନଙ୍କ ପୁରୁଣା ଧର୍ମରେ ଚଳୁଥିଲେ ଓ କେତେକ ରାଜା ମଧ୍ୟ ପୁରୁଣା ବୈଦିକ ଧର୍ମ ଛାଡ଼ି ନ ଥିଲେ ।

ଆଲେକ୍‌ଜାଣ୍ଡାର ଏ ଦେଶରୁ ଫେରିଯିବାର କେତେ କାଳ ପରେ ମଗଧର ନନ୍ଦବଂଶୀୟ ରାଜାମାନେ ରାଜତ୍ୱ କଲେ ।

ପାଟଳୀ ପୁର ( ଅଧୁନା ପାଟନା ) ନଗର ସେମାନଙ୍କ ରାଜଧାନୀ ଥିଲା । ନନ୍ଦମାନେ ଅତ୍ୟାଚାରୀ ଥିଲେ, କିନ୍ତୁ ସେମାନଙ୍କ ମଧ୍ୟରେ ବିଦ୍ୟାର ଆଲୋଚନା ଥିଲା । ପ୍ରତିବର୍ଷ ନନ୍ଦରାଜାମାନେ ପାଟଳୀପୁର ନଗରରେ ବଡ଼ ବଡ଼ ପଣ୍ଡିତମାନଙ୍କର ଗୋଟାଏ ସଭା ଡାକୁଥିଲେ । ସଭାରେ ନାନା ବିଦ୍ୟା ଆଲୋଚନା ହେଉଥିଲା । ଭିନ୍ନ ଭିନ୍ନ ଦେଶର ଅନେକ ପଣ୍ଡିତ ମଧ୍ୟ ସେ ସଭାକୁ ଆସୁଥିଲେ ।

ପଞ୍ଜାବ ପ୍ରଦେଶରେ ତକ୍ଷଶିଳା ନଗର ମଧ୍ୟ ସେତେବେଳେ ବିଦ୍ୟା ଆଲୋଚନା ପାଇଁ ପ୍ରସିଦ୍ଧ ଥିଲା । ଗୁଣାଢ୍ୟଙ୍କ ଘର ସେହି ତକ୍ଷଶିଳାରେ । ସେ ଜଣେ ବଡ଼ ପଣ୍ଡିତ ଓ ଭାରି ବୁଦ୍ଧିମାନ୍ ଲୋକ ଥିଲେ । ପିଲାଦିନେ ତାଙ୍କ ବାପା ମରିଯିବାରୁ ମା ତାଙ୍କୁ ମଣିଷ କରିଥିଲେ । ଦେଖିବାକୁ ତାଙ୍କର ରୂପ ଭାରି ଅସୁନ୍ଦର ଥିଲା; କିନ୍ତୁ ସେତେବେଳେ ତାଙ୍କ ଭଳି ନାନା ଶାସ୍ତ୍ର ପଢ଼ିଥିବା ପଣ୍ଡିତ ଅତି ଅଳ୍ପ ଥିଲେ । ତାଙ୍କର ଆର୍ଥିକ ଅବସ୍ଥା ଭଲ ନ ଥିଲା । ମା ମରିଯିବା ପରେ ସେ ଅର୍ଥ ଉପାର୍ଜନ କରିବା ଆଶାରେ ମଗଧକୁ ଆସିଲେ । ସେତେବେଳେ ରାଜାଙ୍କର ପଣ୍ଡିତ ସଭା ବସିଥିଲା । ସେ ସଭାରେ ବିନା ନିମନ୍ତ୍ରଣରେ ଗୁଣାଢ୍ୟ ଯାଇ ପହଞ୍ଚିଗଲେ ଏବଂ ଆପଣାକୁ ବଡ଼ ପଣ୍ଡିତ ବୋଲି ପରିଚୟ ଦେଲେ । ଏକେ ତାଙ୍କ ରୂପ ଅସୁନ୍ଦର, ଦୀର୍ଘ ପଥ ଚାଲି ଗରିବ ହୋଇଥିବାରୁ ଚିରା ଛିଣ୍ଡା ମଇଳା ଲୁଗା ସେ ପିନ୍ଧିଥିଲେ । କିଏ ବା ତାଙ୍କୁ ପଣ୍ଡିତ ବୋଲି ଚିହ୍ନିବ ? ତାଙ୍କୁ ମୂର୍ଖ ମନେ କରି ରାଜା ତାଙ୍କ ଉପରେ ଭାରି ବିରକ୍ତ ହୋଇ ତାଙ୍କୁ ସଭାରୁ ବାହାର କରିଦେଲେ । ଏଥିରେ ଗୁଣାଢ୍ୟ କ୍ରୋଧରେ ଅଗ୍ନିଶର୍ମା ହୋଇଯାଇ ସମସ୍ତଙ୍କ ଆଗରେ ପଇତା ଛିଣ୍ଡାଇ ପ୍ରତିଜ୍ଞା କଲେ, "ଦେଖ ରାଜା, ଏତେ ଲୋକଙ୍କ ଆଗରେ

ତୁମ୍ଭ କୋମଳ ଅପମାନ ଦେଲ । ମୁଁ ଯେବେ ତୁମ୍ଭର ବଂଶ ନାଶ ନ କରେଁ, ତେବେ ମୁଁ ବ୍ରାହ୍ମଣ ପିଲା ନୁହେଁ", ଏହି କଥା କହି ନନ୍ଦ ସଭାରୁ ଚାଲିଗଲେ ।

ତା ପରେ କି ଉପାୟରେ ନନ୍ଦରାଜାମାନଙ୍କୁ ବିନାଶ କରିବେ, ଏଥିପାଇଁ ଚାଣକ୍ୟ ଭାରି ଚେଷ୍ଟା କଲେ । ନନ୍ଦରାଜାଙ୍କର ମୁରା ନାମରେ ଜଣେ ଦାସୀ ଥିଲା । ଚନ୍ଦ୍ରଗୁପ୍ତ ତାଙ୍କ ପୁଅ । ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କ ସାହାଯ୍ୟରେ ନାନାପ୍ରକାର ଚେଷ୍ଟା କରି ନନ୍ଦରାଜାମାନଙ୍କୁ ମାଇଲେ ଓ ଚନ୍ଦ୍ରଗୁପ୍ତଙ୍କୁ ନନ୍ଦ ସିଂହାସନରେ ବସାଇ କିଛିଦିନ ତାଙ୍କର ମନ୍ତ୍ରୀ ହେଲେ । ମୁରାଙ୍କ ପୁଅ ବୋଲି ଚନ୍ଦ୍ରଗୁପ୍ତ ଓ ତାଙ୍କ ବଂଶର ଅନ୍ୟ ରାଜାମାନଙ୍କୁ ମୌର୍ଯ୍ୟବଂଶର ରାଜା କୁହାଯାଏ ।

"ଚାଣକ୍ୟ ଶ୍ଳୋକ" ଅନେକ ଦେଶ ପିଲାମାନେ ପଢ଼ୁଥିବେ । ସେ ସବୁ ଶ୍ଳୋକ ସରଳ ସଂସ୍କୃତରେ ରଚିତ ହୋଇଥିଲା । ତାକୁ ପଢ଼ିଲେ ଜଣାଯାଏ ଯେ, ଚାଣକ୍ୟ ଖୁବ୍ ପଣ୍ଡିତ ଓ ଭାରି ବୁଦ୍ଧିମାନ୍ ଥିଲେ । ଚାଣକ୍ୟଙ୍କର ଅନ୍ୟ ନାମ କୌଟିଲ୍ୟ । କୌଟିଲ୍ୟଙ୍କର ଆଉ ଗୋଟିଏ ପୁରୁଣା ସଂସ୍କୃତ ବହି ଏବେ ମିଳିଛି । ତାହାର ନାମ 'ଅର୍ଥଶାସ୍ତ୍ର ।' ସେଥିରେ ଲେଖାଅଛି, "ସେତେବେଳେ ରାଜା ମନ୍ତ୍ରୀ-ମାନଙ୍କ ସାହାଯ୍ୟରେ ରାଜକାର୍ଯ୍ୟ ବୁଝୁଥିଲେ । ସୈନ୍ୟବିଭାଗ ଓ ନଗରରକ୍ଷା ବିଭାଗ ପାଇଁ ଭିନ୍ନ ରାଜକର୍ମଚାରୀମାନେ ନିଯୁକ୍ତ ଥିଲେ । ଶାସନର ସୁବିଧା ପାଇଁ ରାଜ୍ୟକୁ ଭିନ୍ନ ଭିନ୍ନ ପ୍ରଦେଶ ଏବଂ ଗ୍ରାମମାନଙ୍କରେ ବିଭକ୍ତ କରାଯାଇ ଥିଲା । କର୍ମଚାରୀମାନଙ୍କର କାର୍ଯ୍ୟ ଓ ପ୍ରଜାମାନଙ୍କର ଅବସ୍ଥା ବୁଝିବାପାଇଁ ରାଜା ଦୂତମାନଙ୍କୁ ନିଯୁକ୍ତ କରିଥିଲେ । ରାଜା ନିଜକୁ ପ୍ରଜାମାନଙ୍କ ଚାକର ବୋଲି ମନେ

କରୁଥିଲେ ଏବଂ ପ୍ରଜାମାନଙ୍କ ସୁଖ ଦୁଃଖକୁ ନିଜର ସୁଖ ଦୁଃଖ ବୋଲି ଭାବୁଥିଲେ ।"

## ପ୍ରଶ୍ନ

୧ । ଚାଣକ୍ୟଙ୍କ ଉପାୟରେ ନନ୍ଦବଂଶ ଧ୍ୱଂସ ହୋଇଥିଲେ ?

୨ । ତୁମ୍ଭମାନଙ୍କ ମଧ୍ୟରୁ କେହି ଚାଣକ୍ୟ ଶ୍ଳୋକ ମୁଖସ୍ଥ କରିଥିଲେ ବୋଲ ।

୩ । ଚନ୍ଦ୍ରଗୁପ୍ତଙ୍କୁ ମୌର୍ଯ୍ୟ ବୋଲି କାହିଁକି କୁହାଯାଏ ?

୪ । ଚାଣକ୍ୟଙ୍କୁ ସଭା ମଧ୍ୟରେ ଅପମାନ ଦେବା ନନ୍ଦରାଜାଙ୍କ ପକ୍ଷରେ ଉଚିତ ହୋଇଥିଲା କି ନାହିଁ ? କାରଣ ସହିତ ଉତ୍ତର ଦିଅ ।

---

# ଅଶୋକ

ପୁରୀ ଜିଲ୍ଲାରେ ଦୟା ନଦୀକୂଳରେ ଧଉଳି ବୋଲି ଗୋଟିଏ ଛୋଟ ପାହାଡ଼ ଅଛି । ସେ ପାହାଡ଼ରେ ବଣ ଝାଡ଼ି ନାହିଁ । ଖାଲି ପଥର, ତା ଉପରେ ଠିଆ ହୋଇ ଚାରିଆଡ଼କୁ ଚାହିଁଲେ ମନରେ ଭାରି ଆନନ୍ଦ ହୁଏ । ପାହାଡ଼ର ଏକ ପାଖରେ ଦୟା ନଦୀ କଳକଳ ଶବ୍ଦ କରି ବହିଯାଉଛି । ଅନ୍ୟ ପାଖରେ କୌଶଲ୍ୟାଗଙ୍ଗା ନାମରେ ଗୋଟିଏ ବଡ଼ ପୋଖରୀ, କିଛି ଦୂରରେ ଖଣ୍ଡଗିରି ଓ ଭୁବନେଶ୍ୱର ମନ୍ଦିର ବଡ଼ ସୁନ୍ଦର ଦିଶେ । ସେହି ଧଉଳି ପାହାଡ଼ର ଗୋଟିଏ ସ୍ଥାନରେ ପଥରକୁ କାଟି କାନ୍ଥ ପରି କରାଯାଇଅଛି ଓ ତହିଁରେ ଅନେକ କଥା ଲେଖା ହୋଇଅଛି । ପ୍ରତିବର୍ଷ ରଜସଂକ୍ରାନ୍ତି ସମୟରେ

ସେଠାରେ ଗୋଟିଏ ବଡ଼ ମେଳା ହୁଏ । ବହୁତ ଲୋକ ଜମା ହୁଅନ୍ତି, କିଣାବିକା କରନ୍ତି, ପାହାଡ଼ ଉପରେ ଚଢ଼ନ୍ତି ଓ ଗୁହା-ଅନ୍ଦର ଶୋଭା ଦେଖନ୍ତି । କେହି କେହି ସଂକୀର୍ତ୍ତନ କରନ୍ତି । ଯେଉଁଠାରେ ପାହାଡ଼ ଦେହରେ ଅନେକ ଜଣାଣ ଲେଖା ହୋଇଅଛି, ସେଠାରେ ଥରେ ବହୁତ ଲୋକ ଜମା ହୋଇ ତାକୁ ଦେଖୁଥିଲେ । ଜଣାଣ ଲେଖା ହୋଇଅଛି, କେହି ଜାଣି ପାରୁ ନ ଥିଲେ । ଏହି ସମୟରେ ଜଣେ ବୁଢ଼ା ସନ୍ନ୍ୟାସୀ ସେଠାରେ ଆସି ପହଞ୍ଚିଲେ । ସନ୍ନ୍ୟାସୀଙ୍କ ମୁହଁରେ ଧଳା ଦାଢ଼ି ନାହିପାଏ ଲମ୍ବିଥାଏ । ସେ ଗଳେ କୌପୀନ ପିନ୍ଧିଥାଆନ୍ତି । ହାତରେ ଗୋଟାଏ ଚିମୁଟା ଓ ଲାଉତୁମ୍ବା, ବୁଢ଼ା ସନ୍ନ୍ୟାସୀଙ୍କୁ ଦେଖି ସମସ୍ତେ ତାଙ୍କ ଗୁହ ପାଖରେ ଜମା ହୋଇଗଲେ ଓ ତାଙ୍କୁ ନମସ୍କାର କଲେ । ସେ ସମସ୍ତଙ୍କୁ ଆଶୀର୍ବାଦ କରି ହସି ହସି ପଚାରିଲେ, "ତୁମ୍ଭେମାନେ ସମସ୍ତେ ଏଠାରେ କାହିଁକି ଜମା ହୋଇଅଛ ?" ଜଣେ ଯୁବକ କହିଲା, 'ମହାରାଜ, ଏଠାରେ ଜଣାଣ ଲେଖା ହୋଇଅଛି ଜାଣିବା ପାଇଁ ସମସ୍ତେ ମୋତେ ପଚାରୁ ଅଛନ୍ତି । ମୁଁ ଇଂରାଜୀ ବଙ୍ଗଳା ଓ ସଂସ୍କୃତ ପଢ଼ିଛି, ମାତ୍ର ଏ ଲେଖାରୁ କିଛି ବୁଝି ପାରୁ ନାହିଁ । ଏ କାହାର ଲେଖା ଓ ସେ ଜଣାଣ ଲେଖି ଅଛନ୍ତି, ଆପଣ ଦୟା କରି ଆମ୍ଭମାନଙ୍କୁ ଟିକିଏ କହିବେ କି ?' ଯୁବକଙ୍କ କଥା ଶୁଣି ସନ୍ନ୍ୟାସୀ ଭାରି ଖୁସି ହେଲେ ଓ ନିକଟରେ ଥିବା ଗୋଟିଏ ଅମ୍ବଗଛ ମୂଳକୁ ଯାଇ ବସିଲେ । ଲୋକମାନେ ସମସ୍ତେ ତାଙ୍କ ଚାରିପାଖରେ ଯାଇ ଜମା ହେଲେ ।

ସନ୍ନ୍ୟାସୀ କହିଲେ; "ତୁମ୍ଭେମାନେ ଯାହା ଜାଣିବାକୁ ଇଚ୍ଛା କରିଅଛ, ତାହା ବଡ଼ ଭଲ କଥା, ମନଦେଇ ଶୁଣ । ଏଠାରେ ପର୍ବତ

ଦେହରେ ଯାହା ଲେଖା ହୋଇଅଛି, ମୁଁ ତାହା ଭଲକରି, ପଢ଼ିଛି । ଆଜକୁ ପ୍ରାୟ ଦୁଇ ହଜାର ବର୍ଷ ତଳେ ଜଣେ ରାଜା ପର୍ବତରେ ଏହି ଲେଖା ଖୋଳାଇଥିଲେ । ସେ ପ୍ରକୃତରେ ରାଜା ଥିଲେହେଁ



ସନ୍ନ୍ୟାସୀଙ୍କ ପରି ଚଳୁଥିଲେ । ତାଙ୍କ ନାମ ଅଶୋକ, ସେ ମହାରାଜ ଚନ୍ଦ୍ରଗୁପ୍ତଙ୍କ ନାତି । ଅଶୋକ ପିଲାଦିନେ ବଡ଼ ଦୁଷ୍ଟ ଥିଲେ । ବହୁକାଳ ରାଜତ୍ୱ କଲାପରେ ସେ ଲୋକରେ ପୁଣ୍ୟାତ୍ମା ଓ ଧର୍ମ-ପରାୟଣ ବୋଲି ପ୍ରଶଂସା ପାଇଥିଲେ । ମଗଧ ବା ବିହାରରେ

ଯେଉଁ ମୌର୍ଯ୍ୟବଂଶର ରାଜାମାନେ ରାଜତ୍ୱ କରୁଥିଲେ, ଅଶୋକ ସେହି ବଂଶର ତୃତୀୟ ରାଜା । ପାଟଳୀପୁତ୍ର ତାଙ୍କର ରାଜଧାନୀ ଥିଲା । ରାଜା ହେବା ପରେ ସେ ଅତି ନିଷ୍ଠୁର ଭାବରେ ପ୍ରଜାମାନଙ୍କୁ ଶାସନ କରୁଥିଲେ ।

ସେ ଜଣେ ବୀର ଥିଲେ । ସବୁବେଳେ ଯୁଦ୍ଧ କରିବାକୁ ତାଙ୍କର ଇଚ୍ଛାଥିଲା । ଆମ ଓଡ଼ିଶା ଦେଶକୁ ସେତେବେଳେ 'କଳିଙ୍ଗ' କହୁଥିଲେ । ରାଜା ହେବାର କେତେକ ଦିନ ପରେ ଅଶୋକ କଳିଙ୍ଗକୁ ଜୟ କରିବା ପାଇଁ ଆସିଲେ । ଭାରି ଯୁଦ୍ଧ ହେଲା । ଶେଷରେ ଅଶୋକ ଜୟ କଲେ । କଳିଙ୍ଗ ରାଜାଙ୍କ ପକ୍ଷରୁ ଏକଲକ୍ଷ ଲୋକ ଏ ଯୁଦ୍ଧରେ ମରିଗଲେ ଓ ଦେଢ଼ଲକ୍ଷ ଲୋକ ବନ୍ଦୀ ହେଲେ । ଏହି ଘଟନାରେ ଅଶୋକଙ୍କ ମନରେ ଭାରି କଷ୍ଟ ହେଲା । ଏତେ ଲୋକଙ୍କର ମୃତ୍ୟୁ ଦେଖି ତାଙ୍କ ପ୍ରାଣ ବ୍ୟାକୁଳ ହୋଇ ଉଠିଲା । ସେ ଭବିଷ୍ୟତରେ ଆଉ ଯୁଦ୍ଧ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ । ସେତେବେଳକୁ ବୌଦ୍ଧଧର୍ମ ଏ ଦେଶରେ ଅନେକ ଲୋକ ଗ୍ରହଣ କରିଥିଲେ । ସେ ଧର୍ମରେ କୌଣସି ଜୀବପ୍ରତି ହିଂସା କରାଯାଏ ନାହିଁ । ଅଶୋକ ବୌଦ୍ଧଧର୍ମ ଗ୍ରହଣ କଲେ । ପୂର୍ବେ ସେ ଯୁଦ୍ଧରେ ଯେଉଁସବୁ ଲୋକ ହତ୍ୟା କରିଥିଲେ, ସେଥିପାଇଁ ତାଙ୍କ ମନରେ ଘୋର ଅନୁତାପ ଜାତ ହେଲା । ଆଗରୁ ପ୍ରତ୍ୟହ ସେ ମାଂସ ଖାଉଥିଲେ । ଏବେ ମାଛ ମାଂସ ତ୍ୟାଗ କରି କେବଳ ଫଳ, ମୂଳ, ଦୁଧ, ଘିଅ ଖାଇଲେ । ରାଜ୍ୟ ମଧ୍ୟରେ କୌଣସି ପ୍ରକା ଜୀବହତ୍ୟା କରି ପାରିବ ନାହିଁ ବୋଲି ସେ ଆଦେଶ ପ୍ରଦାନ କଲେ । ଏହି ଭାବରେ ଅଶୋକ ରାଜା ହୋଇ ସୁଦ୍ଧା ସନ୍ନ୍ୟାସୀ ପରି ଜୀବନ ଅତିବାହିତ କଲେ । ରାଜା ଯେବେ ଋଷିଙ୍କ ପରି ଚଳନ୍ତି,

ତେବେ ତାଙ୍କୁ ରାଜର୍ଷି ବୋଲାଯାଏ. ତେଣୁ ଅଶୋକଙ୍କୁ ରାଜର୍ଷି କୁହାଯାଉଥିଲା । ରାଜା ପ୍ରଜାଙ୍କ ଆଦର୍ଶ, ସେ ଯେପରି ହେବେ, ତାଙ୍କ ପ୍ରଜାମାନେ ସେହିପରି ହେବେ । ରାଜର୍ଷି ଅଶୋକଙ୍କର ପ୍ରଜାମାନଙ୍କ ସ୍ୱଭାବ କିପରି ହୋଇଥିବ ବୋଲି ମନେକର ?

କେବଳ ଯେ ଜୀବହତ୍ୟା ବନ୍ଦ କରାଇ ଦେଇ ରାଜର୍ଷି ଅଶୋକ କ୍ଷାନ୍ତ ଥିଲେ ତାହା ନୁହେଁ । ସେ ତାହାଙ୍କ ରାଜ୍ୟର ପ୍ରଜାମାନଙ୍କ ଉପକାର ପାଇଁ ଅଦ୍ଭୁତ ଅନେକ କାର୍ଯ୍ୟ କରିଥିଲେ । ତାଙ୍କ ପ୍ରଜାମାନେ ଯେପରି ସତ କହିବେ, ଅନ୍ୟର ଉପକାର କରିବେ, ପିତା ମାତା ଓ ଗୁରୁଜନଙ୍କୁ ଭକ୍ତି କରିବେ, ରୋଗୀ ଓ ଅସହାୟ ଜୀବଙ୍କୁ ସାହାଯ୍ୟ କରିବେ, ସେଥିପାଇଁ ରାଜ୍ୟ ମଧ୍ୟରେ ବହୁଲୋକ ନିଯୁକ୍ତ କରି ପ୍ରଜାମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ । କାଳେ ତାଙ୍କ ଉପଦେଶ ଲୋକେ ଭୁଲିଯାଆନ୍ତି, ସେଥିପାଇଁ ସେ ସ୍ଥାନେ ସ୍ଥାନେ ପାହାଡ଼ ମାନଙ୍କରେ, ସ୍ଥାନେ ସ୍ଥାନେ ଗୁମ୍ଫାମାନଙ୍କରେ ଓ ସ୍ଥାନେ ସ୍ଥାନେ ସ୍ତମ୍ଭ-ମାନଙ୍କରେ ଉପଦେଶ ଖୋଳାଇ ଥିଲେ । ଏହି ଯେଉଁ ଲେଖା ଏ ପାହାଡ଼ରେ ଦେଖୁଅଛ, ତାହା ରାଜର୍ଷି ଅଶୋକଙ୍କ ଧର୍ମ ଉପଦେଶ । ଏହାକୁ 'ଅଶୋକ ଅନୁଶାସନ' କୁହାଯାଏ । ଭୁବନେଶ୍ୱର ନିକଟବର୍ତ୍ତୀ ଖଣ୍ଡଗିରି ଗୁମ୍ଫାରେ, ଗଞ୍ଜାମ ଜିଲ୍ଲାର ଜୋଗଡ଼ା ପାହାଡ଼ରେ, ହିମାଳୟ ପର୍ବତରେ, ଗୁଜରାଟର ଗୀର୍ଣ୍ଣର ପର୍ବତରେ ଏହିପରି ଅନୁଶାସନ ଲେଖାଯାଇଅଛି । ଦିଲ୍ଲୀ, ଏଲାହାବାଦ୍ ପ୍ରଭୃତି କେତେକ ସ୍ଥାନରେ ସ୍ତମ୍ଭ ଦେହରେ ମଧ୍ୟ ଏହିପରି ଅନୁଶାସନ ଦେଖାଯାଏ । ଏଥିମଧ୍ୟରେ ଦୁଇ ହଜାର ବର୍ଷ ବିତିଗଲାଣି; କେତେ ଲୋକ ଜନ୍ମିଲେଣି, କେତେ ଲୋକ ମଲେଣି, କିଏ ସେମାନଙ୍କ କଥା ମନେ ରଖିଛି ? ମହାମହିମ ରାଜା ଅଶୋକଙ୍କୁ ଲୋକେ ଆଜିପର୍ଯ୍ୟନ୍ତ ଭୁଲି ନାହାନ୍ତି କି ଭୁଲିବେ ନାହିଁ ।

ଏବେ ଆମ ଓଡ଼ିଶାରେ ଓଡ଼ିଆ ଭାଷା ଚଳୁଅଛି । ଅଶୋକଙ୍କ ସମୟରେ ଯେଉଁ ଭାଷା ଏ ପ୍ରଦେଶରେ ଚଳୁଥିଲା ତାହାର ନାମ ପାଲି ଭାଷା । ଯେଉଁ ଅକ୍ଷରରେ ଏହା ଲେଖାଅଛି, ତାହାକୁ କୁଟିଳ ଅକ୍ଷର ବା ବ୍ରାହ୍ମୀ ଅକ୍ଷର କହନ୍ତି । ସାଧାରଣ ଲୋକେ ଯେପରି ବୁଝି ପାରିବେ, ସେଥିପାଇଁ ଅଶୋକ ସେ ସମୟରେ ଚଳୁଥିବା ଭାଷାରେ ଓ ଅକ୍ଷରରେ ଏହି ଉପଦେଶ ସବୁ ଲେଖାଇଥିଲେ । ମୁଁ ପାଲି ଜାଣେ, ତେଣୁ ଏହି ଅନୁଶାସନଗୁଡ଼ିକ ପଢ଼ିଅଛି । ଏଥିରେ ଲେଖା ଅଛି—ଜୀବହତ୍ୟା କରିବ ନାହିଁ; ରୋଗୀ, ଅସାହାଯ୍ୟ ମନୁଷ୍ୟ, ପଶୁ ପକ୍ଷୀଙ୍କ ସେବା କରିବ, ବୌଦ୍ଧଧର୍ମର ପ୍ରଚାର ପାଇଁ ଚେଷ୍ଟା କରିବ, ନିଜର ବଂଶଧରମାନଙ୍କୁ ସାଧୁ, ଚରିତ୍ରବାନ୍ ହେବାକୁ ଉପଦେଶ ଦେବ; ଇତ୍ୟାଦି । ଭାରତବର୍ଷର ଚାରିଆଡ଼େ ଏହି ସବୁ ଅଶୋକ ଅନୁଶାସନ ଦେଖି ମନେ ହୁଏ ଯେ, ଅଶୋକ ସାରା ଭାରତକୁ ଜୟ କରିଥିଲେ । ସେ ରାଜ୍ୟର ଚାରିଆଡ଼େ ରୋଗୀ ମନୁଷ୍ୟ ଓ ପଶୁଙ୍କ ପାଇଁ ଡାକ୍ତରଖାନା ବସାଇଥିଲେ, ବଡ଼ ବଡ଼ ରାସ୍ତା ତିଆରି କରାଇଥିଲେ; ବହୁତ କୂଅ ଓ ପୋଖରୀ ଖୋଳାଇଥିଲେ ଓ ଆହୁରି ଅନେକ କାର୍ଯ୍ୟ ମଧ୍ୟ କରିଥିଲେ । ଅଶୋକଙ୍କ ପୁଅଙ୍କ ନାମ ମହେନ୍ଦ୍ର ଓ ଝିଅଙ୍କ ନାମ ସଂଘମିତ୍ରା । ସେମାନେ ମଧ୍ୟ ତାଙ୍କ ପିତାଙ୍କ ପରି ରାଜଭୋଗ ଛାଡ଼ି ସନ୍ନ୍ୟାସବ୍ରତ ଗ୍ରହଣ କରିଥିଲେ ଏବଂ ପିତାଙ୍କ ଆଦେଶରେ ସିଂହଳଦ୍ୱୀପକୁ ଯାଇ ସେଠାରେ ରାଜା ଓ ପ୍ରଜାଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରିଥିଲେ । ବର୍ତ୍ତମାନ ତିବ୍ବତ, ଚୀନ, ଜାପାନ ପ୍ରଭୃତି ଦେଶର ଲୋକେ ବୌଦ୍ଧଧର୍ମାବଲମ୍ବୀ । ଏ ଦେଶରୁ ଅଶୋକ ବଡ଼ ବଡ଼ ପଣ୍ଡିତଙ୍କୁ ସେ ସବୁ ଦେଶକୁ ପଠାଇ ସେଠା ରାଜା ଓ ପ୍ରଜା ସମସ୍ତଙ୍କୁ ବୌଦ୍ଧଧର୍ମରେ ଦୀକ୍ଷିତ କରିଥିଲେ । ସେ ଦେଶର ଲୋକେ ଆମ ଭାରତକୁ ସେମାନଙ୍କ

ତୀର୍ଥରୂପେ ମନେ କରନ୍ତି ଓ ତୀର୍ଥଯାତ୍ରୀ ଭାବରେ ଏ ଦେଶକୁ ଆସି ବୌଦ୍ଧତୀର୍ଥ ସବୁ ଦେଖନ୍ତି । କିନ୍ତୁ ଆମ ଭାରତରେ ଏବେ ବୌଦ୍ଧଧର୍ମାବଲମ୍ବୀ ଅତି ଅଳ୍ପ ଅଛନ୍ତି । ଅଶୋକ ପ୍ରାୟ ୪୦ ବର୍ଷ ରାଜା ହୋଇଥିଲେ । ଶେଷରେ ଧର୍ମ ପ୍ରଚାର ପାଇଁ ତାଙ୍କ ରାଜ୍ୟ ଓ ସମ୍ପତ୍ତି ସବୁ ବୌଦ୍ଧସନ୍ନ୍ୟାସୀଙ୍କୁ ଦାନ କରି ସଂସାରଲୀଳା ଶେଷ କରିଥିଲେ ।"

ସନ୍ନ୍ୟାସୀ ଏହିପରି କହି ସମସ୍ତଙ୍କୁ ସେହି ଅନୁଶାସନ ପାଖକୁ ଡାକିନେଲେ ଓ ସେଗୁଡ଼ିକ ପଢ଼ି ସମସ୍ତଙ୍କୁ ବୁଝାଇ-ଦେଲେ । ପରେ ଲୋକମାନେ ସନ୍ନ୍ୟାସୀଙ୍କୁ ନମସ୍କାର କରି ନିଜ ନିଜ ଘରକୁ ଫେରିଗଲେ ।

## ପ୍ରଶ୍ନ

୧ । ଅଶୋକଙ୍କ ପରି ଆଉ କେତେଜଣ ଧାର୍ମିକ, ପ୍ରଜାବତ୍ସଳ ରାଜାଙ୍କର ନାମ କହ ।

୨ । ଅଶୋକ ଆମ ଓଡ଼ିଶାକୁ ଆସିଥିଲେ—ଏହାର କି ପ୍ରମାଣ ତୁମ୍ଭେମାନେ ପାଇଅଛ ?

୩ । ପ୍ରଜାମାନଙ୍କ ଉପକାର ପାଇଁ ଅଶୋକ କି କି କାର୍ଯ୍ୟ କରିଥିଲେ ?

୪ । ଭାରତବର୍ଷର କେଉଁ କେଉଁ ସ୍ଥାନରେ ଅଶୋକଙ୍କର କୀର୍ତ୍ତି ଆଜଯାଏ ରହିଅଛି ?

---

# ବିକ୍ରମାଦିତ୍ୟ

ଆମ ଭାରତବର୍ଷ ଗୋଟାଏ ମହାଦେଶ ପରି । ଅଶୋକଙ୍କ ପରେ ଅଳ୍ପ କେତେଜଣ ରାଜା ସମୁଦାୟ ଭାରତବର୍ଷକୁ ଜୟ କରି ଏକଛତ୍ର ସମ୍ରାଟ ହୋଇଥିଲେ । ମହାରାଜ ବିକ୍ରମାଦିତ୍ୟ ଜଣେ ବିଖ୍ୟାତ ରାଜା । ସେ ୩୭୫ରୁ ୪୧୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଅଶୋକଙ୍କ ରାଜ୍ୟ ପରି ତାହାଙ୍କ ରାଜ୍ୟ ସେତେ ବଡ଼ ନ ଥିଲେହେଁ ଗୁଣରେ ସେ ଅଶୋକଙ୍କଠାରୁ କୌଣସି ଅଂଶରେ ଊଣା ନ ଥିଲେ । କେତେ ଶହ ବର୍ଷ ହେଲା ସେ ପୃଥିବୀ ଛାଡ଼ି ଚାଲି ଗଲେଣି; ମାତ୍ର ସେ ଯେଉଁ ଅଞ୍ଚଳରେ ରାଜା ଥିଲେ, ଆଜଯାଏ ସେ ଅଞ୍ଚଳର ଲୋକମାନେ ତାଙ୍କୁ ଦେବତା ମନେ କରି ପୂଜା କରୁଅଛନ୍ତି ।

ଭାରତବର୍ଷର ମଧ୍ୟଭାଗରେ ଉଜ୍ଜୟିନୀ ବୋଲି ଗୋଟିଏ ନଗର ଅଛି । ସେହିଠାରେ ବିକ୍ରମାଦିତ୍ୟଙ୍କର ରାଜଧାନୀ ଥିଲା । ସିପ୍ରା ନାମରେ ଗୋଟିଏ ପବିତ୍ରନଦୀ ଉଜ୍ଜୟିନୀ ପାଖେଦି ପ୍ରବାହିତ ହେଉଅଛି । ସେଠାରେ ମହାକାଳ ନାମକ ମହାଦେବଙ୍କର ମନ୍ଦିର ଅଛି । କାଶୀ ପରି ଉଜ୍ଜୟିନୀ ହିନ୍ଦୁମାନଙ୍କର ଗୋଟିଏ ପବିତ୍ର ତୀର୍ଥ । କେତେକାଳ ହେଲା ଏ ସ୍ଥାନ ତୀର୍ଥରେ ପରିଣତ ହୋଇଅଛି ତାହା ଜାଣିବାର ଉପାୟ ନାହିଁ । ତେବେ ମହାରାଜ ବିକ୍ରମାଦିତ୍ୟଙ୍କ ରାଜଧାନୀ ହେତୁରୁ ଏ ସ୍ଥାନ ଯେ ଭାରତବିଖ୍ୟାତ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ଉତ୍ତର ଭାରତର ଅଧିକାଂଶ ସ୍ଥାନ ଏହାଙ୍କ ରାଜ୍ୟର ଅନ୍ତର୍ଗତ ଥିଲା । ମଗଧର ପାଟଳିପୁତ୍ର ନଗର, ଯାହାକୁ ଆଜିକାଲି ପାଟନା କହନ୍ତି, ସେଠାରେ ମଧ୍ୟ ଏହାଙ୍କର ଅନ୍ୟ ଗୋଟିଏ ରାଜଧାନୀ ଥିଲା । ଏବେ ଭାରତବର୍ଷରେ ଯେଉଁ ସବୁ

ଦେଶୀୟରାଜ୍ୟ ଅଛି, ତନ୍ମଧ୍ୟରେ ଗୋୟାଲିୟର୍ ଗୋଟିଏ ବଡ଼ ରାଜ୍ୟ । ସେ ରାଜ୍ୟର ରାଜା ହିନ୍ଦୁ ମହାରଟ୍ଟା । ଉଜ୍ଜୟିନୀ ତାହାଙ୍କ ରାଜ୍ୟର ଗୋଟିଏ ଜିଲ୍ଲା । ବିକ୍ରମାଦିତ୍ୟଙ୍କ ସମୟରେ ସେହି ସମସ୍ତ ଦେଶୀୟ ରାଜ୍ୟର ଦକ୍ଷିଣାଂଶ ଅବନ୍ତୀ ବା ଅବନ୍ତିକା ନାମରେ ଅଭିହିତ ହେଉଥିଲା । ଏବେ ତାହାକୁ ମାଲୱା ବା ମାଳବ ବୋଲି କହନ୍ତି ।

ପ୍ରାଚୀନ ଉଜ୍ଜୟିନୀ ଧ୍ୱଂସପ୍ରାପ୍ତ ହୋଇ ଯାଇଅଛି । ସେଠାରୁ ତିନି ମାଇଲ ଦୂରରେ ନୂତନ ଉଜ୍ଜୟିନୀ ନଗର ପରେ ପ୍ରତିଷ୍ଠିତ ହୋଇଅଛି । ସିପ୍ରା ତୀରରେ ପ୍ରାୟ ତିନି ମାଇଲ ଲମ୍ବା ଓ ତିନି ମାଇଲ ଚଉଡ଼ାରେ ପ୍ରାଚୀନ ଉଜ୍ଜୟିନୀର ଯେଉଁ ଧ୍ୱଂସାବଶେଷ ବର୍ତ୍ତମାନ ଦେଖାଯାଏ, ତାହା କେବଳ ମାଟି ଗଦାରେ ପୂର୍ଣ୍ଣ । ପୁଣ୍ୟାତ୍ମା ନରପତି ମହାରାଜ ବିକ୍ରମାଦିତ୍ୟଙ୍କ ପଦ ଯେଉଁ ଭୂମିରେ ଦିନେ ପଡ଼ୁଥିଲା; ସେହି ପବିତ୍ର ଭୂମିକୁ ଦର୍ଶନ କରିବା ପାଇଁ ଏବେ ବହୁଯାତ୍ରୀ ସେ ସ୍ଥାନକୁ ଯାଆନ୍ତି । ସେଠାରେ ଅଛି ଗୋଟିଏ ଦୁଇଟି ପ୍ରାଚୀନ ମନ୍ଦିର ଓ ଯୋଗୀନ୍ଦ୍ର ଭର୍ତ୍ତୃହରିଙ୍କ ତପସ୍ୟାଗୁମ୍ଫା । ସ୍ଥାନୀୟ ଲୋକ କହନ୍ତି, 'ଭର୍ତ୍ତୃହରି ବିକ୍ରମାଦିତ୍ୟଙ୍କ ବଡ଼ଭାଇ । କେତେକଦିନ ରାଜତ୍ୱ କରିବା ପରେ ସଂସାର ପ୍ରତି ତାଙ୍କର ବୈରାଗ୍ୟ ଜାତ ହେଲା । ସେ ସାନଭାଇ ବିକ୍ରମଙ୍କୁ ରାଜା କରାଇ ଦେଇ ନିଜେ ସନ୍ନ୍ୟାସୀବେଶରେ ବହୁଦେଶ ଭ୍ରମଣ କରି ଶେଷରେ ସିପ୍ରା ନଦୀକୂଳରେ ଗୋଟିଏ ଗୁମ୍ଫାରେ ଧର୍ମଶାସ୍ତ୍ର ଆଲୋଚନା କରି ଜୀବନ କଟାଇ ଦେଇଥିଲେ । ଭର୍ତ୍ତୃହରି ଜଣେ ବଡ଼ ପଣ୍ଡିତ ଥିଲେ । ସେ ସଂସ୍କୃତରେ ଅନେକ ଗ୍ରନ୍ଥ ଲେଖି ଯାଇଅଛନ୍ତି ।

ବିକ୍ରମାଦିତ୍ୟ ରାଜା ହୋଇ ନିଜ ପୁଅ ପରି ପ୍ରଜାମାନଙ୍କୁ ପାଳିଲେ । ଦେଶ ଧନଧାନ୍ୟରେ ପୂର୍ଣ୍ଣ ହୋଇଗଲା । ବିକ୍ରମାଦିତ୍ୟ ନିଜେ ଜଣେ ବଡ଼ ପଣ୍ଡିତ ଥିଲେ; ତେଣୁ ତାଙ୍କ ରାଜ୍ୟରେ ପ୍ରତ୍ୟେକ ପ୍ରଜାଙ୍କୁ ସେ ପାଠ ପଢ଼ିବାକୁ ବାଧ୍ୟ କରୁଥିଲେ । ସେତେବେଳେ କେହୁ ଜଣେ ହେଲେ ମୂର୍ଖ ତାଙ୍କ ରାଜ୍ୟରେ ନ ଥିଲେ । ସେ ସନ୍ନ୍ୟାସୀବେଶରେ ସମୁଦାୟ ଭାରତବର୍ଷ ବୁଲି ନାନାସ୍ଥାନରେ ଲୋକଙ୍କର ଉପକାର କରିଥିଲେ । ନିଜ ରାଜ୍ୟରେ ଗୁପ୍ତବେଶରେ ବୁଲି ପ୍ରଜାମାନଙ୍କର ଦୁଃଖ ଦୁର୍ଦ୍ଦଶା ଶୁଣୁଥିଲେ ଓ ସାଙ୍ଗେ ସାଙ୍ଗେ ତାହାର ପ୍ରତିକାର ମଧ୍ୟ କରୁଥିଲେ । ତାହାଙ୍କ ଭଳି ଦୟାଳୁ, ପଣ୍ଡିତ, ପରୋପକାରୀ ରାଜା ଏ ଦେଶରେ ଜନ୍ମି ନାହାନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ମହାରାଜ ବିକ୍ରମ ଅସାଧାରଣ ଯୋଦ୍ଧା ଥିଲେ । ସେତେବେଳେ ଶକ ନାମରେ ଏକ ବିଦେଶୀୟ ଜାତି ଭାରତକୁ ଆସି ଲୋକମାନଙ୍କର ଧନଦ୍ରବ୍ୟ ଲୁଟି କରି ନେଉଥିଲେ । ବିକ୍ରମାଦିତ୍ୟ ସେମାନଙ୍କୁ ଯୁଦ୍ଧରେ ପରାସ୍ତ କରି ରାଜ୍ୟରୁ ତଡ଼ି ଦେଇଥିଲେ, ତେଣୁ ସେ 'ଶକାରି' ଉପାଧି ଲାଭ କରିଥିଲେ ।

ବିକ୍ରମାଦିତ୍ୟ ବଡ଼ ଧର୍ମିକ ଓ ଈଶ୍ୱରପରାୟଣ ଥିଲେ । ବୌଦ୍ଧ ରାଜାମାନଙ୍କ ମଧ୍ୟରେ ଅଶୋକ ଯେପରି ପ୍ରସିଦ୍ଧ ଥିଲେ, ହିନ୍ଦୁ ରାଜାମାନଙ୍କ ମଧ୍ୟରେ ବିକ୍ରମାଦିତ୍ୟ ସେହିପରି ପ୍ରସିଦ୍ଧିଲାଭ କରିଥିଲେ । ଦେବଦେବୀଙ୍କ ମନ୍ଦିରରେ ତାହାଙ୍କ ରାଜ୍ୟ ପୂରିଥିଲା । ସବୁଠାରେ ସାଧୁ, ସନ୍ନ୍ୟାସୀ ଓ ଅତିଥିମାନଙ୍କ ପାଇଁ ସଦାବ୍ରତ ବସିଥିଲା । ରାଜ୍ୟର ସବୁଆଡ଼େ ବଡ଼ ବଡ଼ ଚିକିତ୍ସାଳୟ ଥିଲା । ରୋଗୀମାନଙ୍କୁ ଅତି ଯତ୍ନରେ ସେଠା କରାଯାଉଥିଲା । ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ

ଯିବାପାଇଁ ଅନେକ ସଡ଼କ ତିଆରି ହୋଇଥିଲା । ସଡ଼କର ଦୁଇ ପାଖରେ ବଡ଼ ବଡ଼ ଗଛ ଲାଗିଥିଲା ।

ଆଗେ କୁହାଯାଇଅଛି ଯେ ମହାରାଜ ବିକ୍ରମାଦିତ୍ୟ ମହାପଣ୍ଡିତ ଥିଲେ, ତେଣୁ ତାଙ୍କ ସଭାରେ ଅନେକ ବଡ଼ ବଡ଼ ପଣ୍ଡିତଙ୍କୁ ସେ ରଖାଇଥିଲେ । ସେ ପଣ୍ଡିତମାନଙ୍କ ମଧ୍ୟରେ କାଳିଦାସ ସବୁ ପ୍ରଧାନ। ବିକ୍ରମଙ୍କଠାରୁ ସାହାଯ୍ୟ, ଉତ୍ସାହ ଓ ଅନୁଗ୍ରହ ଲାଭ କରି କାଳିଦାସ ସଂସ୍କୃତରେ ଅନେକ ନାଟକ ଓ କାବ୍ୟ ଲେଖିଥିଲେ । ସେ ସବୁ ଗ୍ରନ୍ଥ କାଳିଦାସଙ୍କ ସଙ୍ଗେ ମହାରଜା ବିକ୍ରମାଦିତ୍ୟଙ୍କର ନାମକୁ ପୃଥିବୀରେ ଚିରସ୍ମରଣୀୟ କରି ରଖିଅଛି ।

ପ୍ରଶ୍ନ

୧ । ବିକ୍ରମାଦିତ୍ୟଙ୍କ ରାଜ୍ୟ ଆମ ଓଡ଼ିଶାର କେଉଁ ଦିଗରେ ? ଆଜିକାଲି ସେ ରାଜ୍ୟକୁ କଅଣ କହନ୍ତି ?

୨ । କେଉଁ ହେତୁରୁ ବିକ୍ରମାଦିତ୍ୟଙ୍କ ନାମ ଭାରତରେ ଚିରସ୍ମରଣୀୟ ହୋଇଅଛି ?

୩ । ଉଜ୍ଜୟିନୀ କେଉଁଠାରେ ? କି ହେତୁରୁ ତାହା ଭାରତରେ ପ୍ରସିଦ୍ଧ ?

୪ । କାଳିଦାସ କିଏ ? ତାଙ୍କ ସମ୍ବନ୍ଧରେ କିଛି ଜାଣିଥିଲେ କହ ।

---

# ଫାହିୟାନ୍

ପୂର୍ବେ କୁହାଯାଇଅଛି ଯେ, ମହାରାଜ ଅଶୋକ ବୌଦ୍ଧଧର୍ମ ପ୍ରଚାର କରିବାପାଇଁ ଚୀନଦେଶକୁ ପ୍ରଚାରକମାନଙ୍କୁ ପଠାଇଥିଲେ । ଚୀନବାସୀମାନେ ସେହି ବୌଦ୍ଧ ପ୍ରଚାରକମାନଙ୍କୁ ପରମ ଆଦରରେ ଗ୍ରହଣ କରିଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ମହାପୁରୁଷ ବୁଦ୍ଧଙ୍କ ଧର୍ମମତ ଗ୍ରହଣ କରି ବୌଦ୍ଧ ହୋଇଥିଲେ । ପରବର୍ତ୍ତୀ କାଳରେ ସେହି ଚୀନବାସୀମାନଙ୍କ ମଧ୍ୟରୁ ଯେଉଁ କେତେଜଣ ସାଧୁ, ଧର୍ମାତ୍ମା ବୌଦ୍ଧ ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଭାରତକୁ ତୀର୍ଥସ୍ଥାନ ବୋଲି ମନେ କରି ଏ ଦେଶକୁ ଆସିଥିଲେ, ସେମାନଙ୍କ ମଧ୍ୟରେ ଫାହିୟାନ୍ ଓ ହୁଏନସାଂ ପ୍ରଧାନ । ସେହିସବୁ ସନ୍ନ୍ୟାସୀ ବିଦେଶୀ ଭ୍ରମଣକାରୀମାନଙ୍କୁ ପରିବ୍ରାଜକ କୁହା ଯାଉଥିଲା । ଚୀନ ପରିବ୍ରାଜକମାନେ ସେତେବେଳେ ଏ ଦେଶରେ ନାନା ସ୍ଥାନରେ ଭ୍ରମଣ କରି ନିଜ ଦେଶକୁ ଫେରିଯାଇ ଏ ଦେଶର ଲୋକଙ୍କ ଅବସ୍ଥା, ଆଚାର, ରୀତିନୀତି ସମ୍ବନ୍ଧରେ ତାହାଙ୍କ ଦେଶ ଲୋକଙ୍କ ଜାଣିବା ସକାଶେ ଅନେକ କଥା ଲେଖିଥିଲେ । ସେ ସବୁ ପରିବ୍ରାଜକମାନଙ୍କ ଲେଖା ଚୀନଭାଷାରୁ ଅନ୍ୟାନ୍ୟ ଭାଷାରେ ଅନୁବାଦିତ ହୋଇ ପ୍ରଚାରିତ ହୋଇଅଛି । ତାହା ପଢ଼ିଲେ ସେକାଳ ସମ୍ବନ୍ଧରେ ଅନେକ କଥା ଜଣା ପଡ଼େ ।

ଏ ଯୁଗରେ ଏକ ଦେଶରୁ ଅନ୍ୟ ଦେଶକୁ ଯିବାପାଇଁ ଯେଉଁସବୁ ସୁବିଧା ଅଛି, ସେତେବେଳେ ତାହା ସବୁ କିଛି ନ ଥିଲା । ସମୁଦ୍ରରେ ସେ କାଳରେ ଯେଉଁ ପାଲଟଣା ଜାହାଜ ଚାଲୁଥିଲା, ତାହା ଅତି କ୍ଷୁଦ୍ର ଥିଲା । ଯଥେଷ୍ଟ ଖାଦ୍ୟବସ୍ତୁ ତହିଁରେ ରହୁ

ପାରୁ ନ ଥିଲା । ତାହା ପୁଣି ସମୁଦ୍ର କୂଳରୁ ଅଳ୍ପ ଦୂରରେ ଚାଲୁଥିଲା । କାରଣ ଭିତର ସମୁଦ୍ରର ଅବସ୍ଥା ସମ୍ବନ୍ଧରେ ସେ ସମୟର ଜାହାଜୀମାନେ ବେଶି କିଛି କଥା ଜାଣି ନ ଥିଲେ । ବେଳେ ବେଳେ କୂଳରେ ଥିବା ବୁଡ଼ା ପାହାଡ଼ମାନଙ୍କରେ ଧକ୍କା ଲାଗି ଅନେକ ଜାହାଜ ସମୁଦ୍ରରେ ବୁଡ଼ି ଯାଉଥିଲା ଓ ଜଳଦସ୍ୟୁମାନେ ଅନେକ ସ୍ଥାନରେ ଜାହାଜରେ ଥିବା ପାନ୍ଥୀମାନଙ୍କର ସର୍ବସ୍ୱ ଲୁଟ କରି ନେଉଥିଲେ, ତେଣୁ କେବଳ ଚାଲି ଚାଲି ସୁଦୂର ଚୀନ ଦେଶରୁ ଭାରତକୁ ଆସିବା କେତେ କଠିନ କାର୍ଯ୍ୟ, ତାହା ସହଜରେ ଅନୁମାନ କରାଯାଇ ପାରେ । ଚୀନ ବାଟରେ ମଧ୍ୟ ଅନେକ ପାହାଡ଼, ମରୁଭୂମି, ନିବିଡ଼ ଜନଶୂନ୍ୟ ବଣ ପଡ଼ୁଥିଲା । ବାଟରେ ଚୋର, ଡକାୟତ, ହିଂସ୍ରଜନ୍ତୁ ପୂରି ରହୁଥିଲେ । ତଥାପି ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଭାରତ ଦେଖିବାପାଇଁ ଲୋକେ ପ୍ରାଣର ମାୟା ଭୁଲିଯାଇ ଅତି ସାହସରେ ଏ ଦେଶକୁ ଆସୁଥିଲେ ।

ବୋଧହୁଏ ଫାହିୟାନ୍ ଚୀନବାସୀଙ୍କ ମଧ୍ୟରେ ସର୍ବ ପ୍ରଥମ ଭାରତଯାତ୍ରୀ । ସେତେବେଳେ ବିଦେଶୀ ଲୋକଙ୍କୁ ନିଜ ଦେଶରେ ଦେଖିଲେ ଲୋକେ ମାରି ପକାଉଥିଲେ । ମାତ୍ର ଫାହିୟାନଙ୍କ ମନରେ ସେ ଭୟ ନ ଥିଲା । ସେ ଜାଣିଥିଲେ, ଦୟାସାଗର ବୁଦ୍ଧଦେବ ଯେଉଁ ଦେଶରେ ଜନ୍ମିଥିଲେ, ସେ ଦେଶର ଲୋକେ ନିଶ୍ଚୟ ଦୟାଳୁ, ଅତିଥିବତ୍ସଳ ଓ ପରୋପକାରୀ ହୋଇଥିବେ । ଏ ଦେଶ ଲୋକଙ୍କ ଭାଷା ସେ ଆଦୌ ଜାଣି ନ ଥିଲେ । ତଥାପି ତାଙ୍କ ମନର ବଳ ଓ ସାହସ ଏପରି ପ୍ରବଳ ଥିଲା ଯେ, ସେ ବଣ, ଜଙ୍ଗଲ, ପାହାଡ଼, ପର୍ବତ, ମରୁଭୂମି, ନଦୀ ପ୍ରଭୃତି ପାର ହୋଇ ଏ ଦେଶରେ ପହଞ୍ଚିଥିଲେ ।

ଫାହିୟାନ୍ କେବଳ ଯେ ଜଣେ ତୀର୍ଥଯାତ୍ରୀ ଥିଲେ ତାହା ନୁହେଁ, ସେ ଚୀନ ଦେଶବାସୀ ଜଣେ ବିଖ୍ୟାତ ପଣ୍ଡିତ ମଧ୍ୟ ଥିଲେ । ସେତେବେଳେ ଚୀନଦେଶରେ ବିଦ୍ୟାର ଭାରି ଆଦର ଥିଲା ଭାରତବର୍ଷରେ ଉପସ୍ଥିତ ହୋଇ ସେ ଅନେକ ରାଜ୍ୟ ଦେଖି-ଥିଲେ ଏବଂ ଯେଉଁ ସ୍ଥାନକୁ ଯାଉଥିଲେ, ସେ ସ୍ଥାନମାନଙ୍କ ସମ୍ବନ୍ଧରେ ଅନେକ କଥା ଲେଖିଥିଲେ । ଭାରତବାସୀ ରାଜା ଓ ପ୍ରଜା ସମସ୍ତଙ୍କଠାରୁ ସବୁ ସ୍ଥାନରେ ସେ ଭାରି ସମ୍ମାନ ଓ ଆଦର ପାଇଥିଲେ । ଫାହିୟାନ୍ ମଗଧରାଜ୍ୟରେ ଉପସ୍ଥିତ ହୋଇ ରାଜଧାନୀ ପାଟଳୀପୁତ୍ର ନଗରରେ ତିନି ବର୍ଷ ରହି ସେଠାରେ ସଂସ୍କୃତଭାଷା ଶିକ୍ଷା କରିଥିଲେ । ସେତେବେଳେ ମଗଧକୁ ମଧ୍ୟଦେଶ କୁହାଯାଉଥିଲା ।

ମହାରାଜ ବିକ୍ରମାଦିତ୍ୟ ମଗଧର ରାଜା ଥିଲେ । ବିକ୍ରମାଦିତ୍ୟଙ୍କର ଅନ୍ୟ ନାମ ଥିଲା ଦ୍ୱିତୀୟ ଚନ୍ଦ୍ରଗୁପ୍ତ । ଫାହିୟାନ୍ ମଗଧ ସମ୍ବନ୍ଧରେ ଅନେକ କଥା ଲେଖି ଯାଇଅଛନ୍ତି । ରାଜର୍ଷି ଅଶୋକ ମରିବାର ଛଅ ଶହ ବର୍ଷ ଅତୀତ ହୋଇଥିଲେହେଁ ମଗଧରାଜ୍ୟରେ ସେତେବେଳେ ବୌଦ୍ଧଧର୍ମର ପ୍ରଭାବ କମି ନ ଥିଲା । ଲୋକେ ପରମ ସୁଖଶାନ୍ତିରେ କାଳଯାପନ କରୁଥିଲେ । ରାଜ୍ୟର ଆଇନ ଭାରି କୋହଳ ଥିଲା । ରାଜ୍ୟ ମଧ୍ୟରେ ବୌଦ୍ଧମଠ ଅନେକ ଥିଲା । ମହାରାଜ ବିକ୍ରମାଦିତ୍ୟ ହିନ୍ଦୁ ଥିଲେହେଁ ସେ ବୌଦ୍ଧମଠମାନଙ୍କର ପରିଚାଳନା ନିମିତ୍ତ ବହୁ ଅର୍ଥ ପ୍ରଦାନ କରୁଥିଲେ । ଦୀନ, ଦୁଃଖୀମାନଙ୍କୁ ଅନ୍ନବସ୍ତ୍ର ପ୍ରଦାନ କରିବା ବୌଦ୍ଧ ସନ୍ନ୍ୟାସୀମାନଙ୍କର ଜୀବନର ବ୍ରତ ଥିଲା । ମୋଟରେ

କହିଲେ, ହିନ୍ଦୁ ବୌଦ୍ଧମାନେ ନାନାଭାବରେ ପରସ୍ପରକୁ ସାହାଯ୍ୟ କରି ବିଶାଳ ମଗଧକୁ ସ୍ୱର୍ଗରାଜ୍ୟରେ ପରିଣତ କରିଥିଲେ ।

ମହାରାଜ ଅଶୋକ ପାଟଳୀପୁତ୍ର ନଗରରେ ଯେଉଁ ମନୋହର ରାଜପ୍ରାସାଦ ନିର୍ମାଣ କରାଇଥିଲେ, ଫାହିୟାନ୍ ନିଜ ଆଖିରେ ସେହି ପ୍ରାସାଦ ଦେଖି ଭାରି ଚକିତ ହୋଇ ପଡ଼ିଥିଲେ । ରୋଗୀମାନଙ୍କର ଚିକିତ୍ସା ନିମିତ୍ତ ବଡ଼ ବଡ଼ ଦାତବ୍ୟ ଚିକିତ୍ସାଳୟମାନ ରାଜ୍ୟର ନାନାସ୍ଥାନରେ ପ୍ରତିଷ୍ଠିତ ଥିଲା । ଅଧିକାଂଶ ଲୋକ ଧନୀ ଓ ବିଦ୍ୱାନ ଥିଲେ । ରାଜକର୍ମଚାରୀମାନଙ୍କର ବେତନ ନିର୍ଦ୍ଦିଷ୍ଟ ଥିଲା । ରାଜକର ଅତ୍ୟଳ୍ପ ମାତ୍ରାରେ ଆଦାୟ ହେଉଥିବାରୁ ପ୍ରଜାମାନଙ୍କର କଷ୍ଟ ହେଉ ନ ଥିଲା । ସେତେବେଳେ ଏ ଦେଶରେ ଲୋକେ ଅନ୍ୟ ଦେଶକୁ ଯାଇ ବାଣିଜ୍ୟ କରୁଥିଲେ ।

ବିକ୍ରମାଦିତ୍ୟଙ୍କ ରାଜତ୍ୱକାଳରେ ଅନେକ ବଡ଼ ବଡ଼ ଲୋକ ଏ ଦେଶରେ ଜନ୍ମିଥିଲେ । ମହାକବି କାଳିଦାସଙ୍କ କଥା ପୂର୍ବେ କୁହାଯାଇଅଛି । ତାଙ୍କର ପ୍ରଣୀତ ରଘୁବଂଶ, କୁମାରସମ୍ଭବ, ଶକୁନ୍ତଳା ପ୍ରଭୃତି ଗ୍ରନ୍ଥମାନ ସେକାଳରେ ଯେପରି ଆଦରଣୀୟ ଥିଲା ଏକାଳରେ ମଧ୍ୟ ସେହିପରି ଆଦର ପାଉଅଛି । ଯେଉଁ ନଅ ଜଣ ବିଖ୍ୟାତ ପଣ୍ଡିତ ବିକ୍ରମଙ୍କ ସଭାକୁ ଅଳଙ୍କୃତ କରିଥିଲେ, କାଳିଦାସ ସେମାନଙ୍କ ମଧ୍ୟରେ ଜଣେ । ସଂସ୍କୃତ ସାହିତ୍ୟ ସେତେବେଳେ ଏ ଦେଶରେ ବଡ଼ ଉନ୍ନତ ଅବସ୍ଥାରେ ଥିଲା । ଅନେକ ପଣ୍ଡିତ ଜ୍ୟୋତିଷ, ଦର୍ଶନ, ଗଣିତ ଓ ଇତିହାସ ଆଲୋଚନା ମଧ୍ୟ କରୁଥିଲେ ।

ଦୀର୍ଘ ଏଗାର ବର୍ଷକାଳ ଫାହିୟାନ୍ ଭାରତରେ ନାନା ସ୍ଥାନ-ବୁଲି ଶେଷରେ ଜାହାଜରେ ବସି ସମୁଦ୍ର ବାଟେ ନିଜ ଦେଶକୁ ଫେରିଥିଲେ ।

ପ୍ରଶ୍ନ

୧ । ଫାହିୟାନ୍ କେବେ ଓ କେଉଁ ବାଟେ ଭାରତବର୍ଷକୁ ଆସି-ଥିଲେ ?

୨ । ଫାହିୟାନଙ୍କ ଲିଖିତ ବିବରଣୀରୁ ସେ କାଳର ଲୋକଙ୍କ ସମ୍ବନ୍ଧରେ ଆମ ମନରେ କିପରି ଧାରଣା ହେଉଅଛି ?

୩ । କେଉଁ ଗୁଣ ଥିବାରୁ ଏକା ହୋଇ ବିଦେଶକୁ ଆସିବାକୁ ଫାହିୟାନ୍ ଡରି ନ ଥିଲେ ?

---

## ଜାହାଜ

ଆଗେ ସମୁଦ୍ରରେ ପାଲ ସାହାଯ୍ୟରେ ଜାହାଜ ଚାଲୁଥିଲା, ଏବେ ମଧ୍ୟ ନଈରେ ଓ ଚିଲିକା ହ୍ରଦରେ ଅନେକ ପାଲଟଣା ନୌକା ଚାଲୁଥିବାର ଦେଖାଯାଏ । ଯେତେବେଳେ ପବନ ଅନୁକୂଳ ଦିଗକୁ ବହୁଥିଲା, ସେତେବେଳେ ସମୁଦ୍ରରେ ଜାହାଜ ଚାଲୁଥିଲା; ପବନରେ ଗତି ପ୍ରତିକୂଳ ହେଲେ ଜାହାଜ ଅଗତ୍ୟା ଏକସ୍ଥାନରେ ପଡ଼ି ରହୁଥିଲା । ଷ୍ଟୀମ୍ ଇଞ୍ଜିନ୍ ସୃଷ୍ଟି ହେବା ପରେ ତାହା ସାହାଯ୍ୟରେ ନଦୀ, ସମୁଦ୍ରରେ କିପରି ଜାହାଜ ଚଳିତ ଚାଲିବ, ସେଥିପାଇଁ କେତେକ ଲୋକ ନାନାପ୍ରକାର ଚେଷ୍ଟା କଲେ, କିନ୍ତୁ ତାହାର ଚେଷ୍ଟା ସଫଳ ହେଲା ନାହିଁ । ଶେଷରେ ରବାର୍ଟ ଫାଲ୍‌ଟନ

ନାମକ ଜଣେ ଆମେରିକାବାସୀ ଏ କାର୍ଯ୍ୟରେ ସଫଳକାମ ହୋଇ ସ୍ୱୀୟ ନାମକୁ ପୃଥିବୀରେ ଚିରସ୍ମରଣୀୟ କରି ଯାଇଅଛନ୍ତି ।



ରବର୍ଟ ଫଲ୍‌ଟନ୍ ୧୭୬୫ ଖ୍ରୀଷ୍ଟାବ୍ଦରେ ଆମେରିକାର ପେନ୍‌ସିଲ୍‌ଭେନିଆ ପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ ପିତୃଶୂନ୍ୟ ହେବାରୁ ସେ ଲେଖା ପଢ଼ାରେ ଅଧିକ ଅଗ୍ରସର ହୋଇ ପାରି ନ ଥିଲେ । କିନ୍ତୁ ଈଶ୍ୱରଦତ୍ତ ପ୍ରତିଭାବଳରୁ ଯନ୍ତ୍ରାଦି ନିର୍ମାଣକୌଶଳ ତାଙ୍କ ମସ୍ତିଷ୍କରେ ସହଜରେ ପ୍ରବେଶ କରି ପାରୁଥିଲା । ଯୌବନକାଳରେ ଚିତ୍ରାଙ୍କନ କାର୍ଯ୍ୟରେ ସେ ଅସାଧାରଣ ଶକ୍ତି ଅର୍ଜନ କରିଥିଲେ । ତତ୍ପରେ ସେ ଷ୍ଟୀମ୍‌ଇଞ୍ଜିନ୍ ବିଷୟରେ ବିଶେଷ ଜ୍ଞାନଲାଭ କରିବା ଆଶାରେ ଆମେରିକା ଛାଡ଼ି ଇଂଲଣ୍ଡ ଯାତ୍ରା କଲେ । ସେଠାରେ ପ୍ରୟୋଜନୀୟ ଜ୍ଞାନଲ

କରସାର ସେ ଫ୍ରାନ୍ସ ଯାଇଥିଲେ । ଏହି ସମୟରେ ଆମେରିକାର ଅନେକ ଲୋକ ଷ୍ଟୀମ୍ ବୋଟ୍ ତିଆରି କରିବାକୁ ଚେଷ୍ଟା କରିଥିଲେ । ଫାଲ୍ଟନ୍ ସେତେବେଳେ ଫ୍ରାନ୍ସରେ ରହୁଥିବାରୁ ସେ ସମ୍ବନ୍ଧରେ ଆମେରିକାରେ କି ଚେଷ୍ଟା ହେଉଅଛି, ଆଦୌ ଜାଣିପାରି ନ ଥିଲେ । ଫ୍ରାନ୍ସରେ ସେ ଗୋଟିଏ ଷ୍ଟିମ୍ ବୋଟ୍ ତିଆରି କରି ସିନ୍ ନଦୀ ଉପରେ ଚଳାଇବାକୁ ଚେଷ୍ଟା କଲାବେଳେ ହଠାତ୍ ତାହା ନଈରେ ବୁଡ଼ିଗଲା । ଫାଲ୍ଟନ୍ ଦୁଃଖିତ ହେଲେହେଁ ଉତ୍ସାହଶୂନ୍ୟ ହେଲେ ନାହିଁ । ସେଠାରୁ ସେ ଇଂଲଣ୍ଡକୁ ଆସି ଦେଖିଲେ ଯେ ସିମିଂଟନ୍ ନାମକ ଜଣେ ଇଞ୍ଜିନିଅର୍ ଅପେକ୍ଷାକୃତ ବଡ଼ ଗୋଟିଏ ଷ୍ଟୀମ୍ ବୋଟ୍ ତିଆରି କରିଅଛନ୍ତି । ଫାଲ୍ଟନ୍ ସେହି ବୋଟରେ ଚଢ଼ି ସୂକ୍ଷ୍ମ-ଦୃଷ୍ଟିରେ ତାହାର ନିର୍ମାଣ କୌଶଳ ଓ ବିଶେଷତ୍ୱ ଦେଖିଥିଲେ ।

୧୮୦୬ ଖ୍ରୀଷ୍ଟାବ୍ଦରେ ଫାଲ୍ଟନ୍ ସ୍ୱଦେଶକୁ ଫେରିଯାଇ ଲିଭିଂଷ୍ଟୋନ୍ ନାମକ ତାଙ୍କର ଜଣେ ବନ୍ଧୁଙ୍କ ସାହାଯ୍ୟରେ ସେଠାରେ ଗୋଟିଏ ବଡ଼ ଆକାରର ଷ୍ଟୀମ୍ ବୋଟ୍ ତିଆରି କରିବା ପାଇଁ କାରିଗର ନିଯୁକ୍ତ କଲେ । ମାତ୍ର କାର୍ଯ୍ୟ ଶେଷ ହେବା ପୂର୍ବେ ଅର୍ଥାଭାବ ଉପସ୍ଥିତ ହେଲା । ଲୋକେ ଏ କାର୍ଯ୍ୟକୁ ତାଙ୍କର ବୋକାମି ମନେ କରି ନାନାପ୍ରକାରେ ଥଟ୍ଟା କଲେ । ଶେଷରେ ତାଙ୍କର ଜଣେ ଧନବାନ୍ ବନ୍ଧୁ ତାଙ୍କୁ ଅର୍ଥ ସାହାଯ୍ୟ ଦେଇ ତାଙ୍କ ନାମ ଗୋପନ ରଖିବାକୁ ଅନୁରୋଧ କଲେ । କାରଣ ସେ ମନେ କଲେ, ବୋକାକୁ ଅର୍ଥ ସାହାଯ୍ୟ କରୁଥିବା କଥା ଶୁଣିଲେ ଲୋକେ ତାଙ୍କୁ ମଧ୍ୟ ବୋକା କହିବେ । ସେ ଯାହାହେଉ ଫାଲ୍ଟନ୍ ଏକାନ୍ତ ନିଷ୍ଠା ଓ ଯତ୍ନରେ ବୋଟ୍‌ଟି ନିର୍ମାଣ କରି ୧୮୦୭ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧୧ ତାରିଖର ଯାତ୍ରୀ ଓ ପଣ୍ୟଦ୍ରବ୍ୟ ବୋଝାଇ କରି ହଡ୍‌ସନ୍

ନଦୀରେ ଯାତ୍ରା ଆରମ୍ଭ କଲେ । ଏହି ଅଭିନବ ଦୃଶ୍ୟ ଦେଖିବା ପାଇଁ ନଦୀର ଦୁଇ କୂଳରେ ସହସ୍ର ସହସ୍ର ଲୋକ ଜମା ହେଲେ । ବୋଟ୍ ଖଣ୍ଡ ଶୀଘ୍ର ବୁଡ଼ିଯିବ ବୋଲି ସମସ୍ତଙ୍କର ଆଶଙ୍କା ହେଲା । କିନ୍ତୁ ଯେତେବେଳେ ତାହାର ଦୁଇ ପାଖରେ ଲାଗିଥିବା ବଡ଼ ଚକ ଦୁଇଗୋଟି ଜଳରାଶିକୁ ଆଲୋଡ଼ିତ କରି ବୁଲିଲା ଏବଂ ଉଦ୍ଧ୍ୱାସ ବୋଟ ହୋହଲ୍ ହୋହଲ୍ ଦ୍ରୁତଗତିରେ ସ୍ରୋତର ପ୍ରତିକୂଳରେ ଆଗକୁ ଚାଲିଲା, ସେତେବେଳେ ଦର୍ଶକମାନେ ଆନନ୍ଦରେ କରତାଳି ଦେଇ ନିର୍ମାତାଙ୍କୁ ଶତମୁଖରେ ପ୍ରଶଂସା କରିବାକୁ ଲାଗିଲେ । ଫାଲ୍‌ଟନ୍ ତାଙ୍କର ଏହି ପ୍ରଥମ ଷ୍ଟିମ୍ ବୋଟ୍‌ର ନାମ ଦେଇଥିଲେ "କ୍ଲେର୍‌ଲେଣ୍ଟ୍" । ପ୍ରଥମ ଥର ମୋଟେ ୧୨ ଜଣ ଲୋକ କ୍ଲେର୍‌ମେଣ୍ଟ୍‌ର ଯାତ୍ରୀ ହୋଇଥିଲେ । ନିଉୟର୍କଠାରୁ ଆଲବେନୀ ପର୍ଯ୍ୟନ୍ତ ୧୫୦ ମାଇଲ୍ ପଥ ୩୨ ଘଣ୍ଟାରେ ଅତିକ୍ରମ କରି କ୍ଲେର୍‌ମେଣ୍ଟ୍ ୩୦ ଘଣ୍ଟାରେ ସେଠାରୁ ନିରାପଦରେ ଫେରି ଆସିଲା । ଏହା ଦେଖି ସାଧାରଣ ଲୋକଙ୍କ ଷ୍ଟିମ୍ ବୋଟର କାର୍ଯ୍ୟକାରିତାରେ ଆଉ ସନ୍ଦେହ କଲେ ନାହିଁ । ବ୍ୟବସାୟୀ ଭାବରେ ଏହି ବୋଟ୍ ଚଳାଇ ଫାଲ୍‌ଟନ୍ ବେଶ୍ ରୋଜଗାର କଲେ । ତାଙ୍କର ସ୍ୱପ୍ନ ସଫଳ ହେଲା । ୧୮୩୫ ରେ ଫାଲ୍‌ଟନ୍‌ଙ୍କର ମୃତ୍ୟୁ ହେଲା । ମୃତ୍ୟୁ ପୂର୍ବରୁ ସେ ଏହିପରି ୧୭ ଖଣ୍ଡି ଷ୍ଟିମ୍ ବୋଟ୍ ନିର୍ମାଣ କରିଯାଇଥିଲେ ।

ଫାଲ୍‌ଟନ୍‌ଙ୍କ ଷ୍ଟିମ୍ ବୋଟ୍ ବା ବାଷ୍ପୀୟପୋତ କେବଳ ନଦୀ ଜଳରେ ଚଳିବାର ଉପଯୋଗୀ ହୋଇ ତିଆରି ହୋଇଥିଲା । ତରଙ୍ଗପୂର୍ଣ୍ଣ ସମୁଦ୍ରରେ ଚାଲିବା ତା ପକ୍ଷରେ ନିରାପଦ ନ ଥିଲା । ତାହାର ଦୁଇପାଖରେ ଦୁଇଗୋଟି ପ୍ରକାଣ୍ଡ ଚାଳନଯନ୍ତ୍ର ସଂଯୁକ୍ତ ହୋଇଥିଲା । ଷ୍ଟିମ୍ ଇଞ୍ଜିନ୍ ଶକ୍ତିରେ ସେହି ଚକ ଦୁଇଗୋଟି

ବୁଲିଲେ ବୋଟ୍ ବୁଲୁଥିଲା । ମାତ୍ର ସମୁଦ୍ରଲହରୀ ଆଘାତରେ ଏହି ଚକ୍ର ଦୁଇଗୋଟି ନଷ୍ଟ ହୋଇଯିବାର ଆଶଙ୍କା ଥିଲା; ତେଣୁ ସମୁଦ୍ର ଜଳରେ ଏହା ଚାଲିଲା ନାହିଁ । ବିଖ୍ୟାତ ଉଦ୍ଭାବକ ଜନ୍ ଏରିକ୍‌ସନ୍ ସମୁଦ୍ରବକ୍ଷରେ ଚାଲିବା ଉପଯୋଗୀ ବାଷ୍ପୀୟପୋତ ସୃଷ୍ଟି କରି ଜଗତରେ ଅମର ହୋଇଅଛନ୍ତି । ଏରିକ୍‌ସନ୍ ୧୮୦୩ ଖ୍ରୀଷ୍ଟାବ୍ଦରେ ସୁଇଡେନ୍ ଦେଶରେ ଜନ୍ମଗ୍ରହଣ କରିଥିଲେ । ସେ ଆମେରିକା ଓ ଇଂଲଣ୍ଡର ନାନାସ୍ଥାନରେ ବୁଲି ଷ୍ଟୀମ୍ ଇଞ୍ଜିନ୍ ଚାଳିତ ପୋତମାନ ତନ୍ନ ତନ୍ନ କରି ପରୀକ୍ଷା କଲେ ଓ ୧୮୩୭ ଖ୍ରୀଷ୍ଟାବ୍ଦରେ ଗୋଟିଏ ଛୋଟ ଜଳଜାହାଜ ତିଆରି କରି ଟେମସ୍ ନଦୀରେ ଭସାଇ-ଦେଲେ । ଏହି ଜାହାଜର ଦୁଇପାଖରେ ବଡ଼ ବଡ଼ ଚକ ପରିବର୍ତ୍ତରେ ସେ "ସ୍କ୍ରୁ ପରିଚାଳକ" ନାମକ ଯନ୍ତ୍ରର ବ୍ୟବସ୍ଥା କରିଥିଲେ ଏବଂ ସେହି ଯନ୍ତ୍ରକୁ ସେ ଜାହାଜର ପଛପଟର ତଳ ପାଖରେ ବସାଇଥିଲେ । ପାଣି ଭିତରେ ଏହି ଯନ୍ତ୍ର କାର୍ଯ୍ୟ କରୁ-ଥିବାରୁ ତରଙ୍ଗ ଆଘାତରେ ତାହାର ଅନିଷ୍ଟ ହେବାର ସମ୍ଭାବନା ନ ଥିଲା । ୧୮୩୮ ଖ୍ରୀଷ୍ଟାବ୍ଦରେ ଏରିକ୍‌ସନ୍‌ଙ୍କ ନିର୍ମିତ "ରବର୍ଟ ଅଫ୍ ଷ୍ଟକ୍‌ଟନ୍" ନାମକ ଜାହାଜ ସର୍ବ ପ୍ରଥମେ ଆଟ୍‌ଲାଣ୍ଟିକ ମହାସାଗର ପାରହୋଇ ଇଂଲଣ୍ଡରୁ ନିଉୟର୍କରେ ଯାଇ ଉପସ୍ଥିତ ହେଲା । ଆମେରିକାବାସୀମାନେ ଏଭଳି ଜାହାଜକୁ ଭାରି ପସନ୍ଦ କରିବାରୁ ଏରିକ୍‌ସନ୍ ଉତ୍ସାହିତ ହୋଇ ଯୁଦ୍ଧଜାହାଜ ଗୋଟିଏ ତିଆରି କଲେ । ଏଥିରେ ଦେଶ ମଧ୍ୟରେ ତାଙ୍କର ଭାରି ସମ୍ମାନ ବଢ଼ିଲା ଏବଂ ସେ ପ୍ରଚୁର ଅର୍ଥଲାଭ କରି ପରମସୁଖରେ ଜୀବନର ଅବଶିଷ୍ଟ ଅଂଶ ଆମେରିକାରେ ଅତିବାହିତ କଲେ ।

କ୍ରମେ କ୍ରମେ ଏହି ବାଷ୍ପୀୟ ପୋତସବୁର ଅଭାବନୀୟ ଉନ୍ନତି ହେଉଅଛି । ଏବେ ଯେଉଁସବୁ ପ୍ରକାଣ୍ଡ ପ୍ରକାଣ୍ଡ ବାଷ୍ପୀୟ

ଯୋଗ ନିର୍ମିତ ହେଉଅଛି, ସେଗୁଡ଼ିକ ପ୍ରତ୍ୟେକ ଗୋଟିଏ ଗୋଟିଏ ସହର ପରି । ତା ଭିତରେ ଖେଳପଡ଼ିଆ, ଜଳାଶୟ, ହୋଟେଲ, ସିନେମା ଘର, ବଗିଚା, ବ୍ୟାଙ୍କ, ଥିଏଟର ଘର ପ୍ରଭୃତି ପ୍ରାୟ ସବୁ ଥାଏ । ବିପଦ ବେଳେ ଜୀବନରକ୍ଷା ପାଇଁ ତହିଁରେ ଏକପ୍ରକାର ଜ୍ୟାକେଟ୍ ଥାଏ । ଏହି ଜ୍ୟାକେଟ୍ ପିନ୍ଧିଲେ ପହଁରି ଜାଣି ନ ଥିବା ଲୋକ ମଧ୍ୟ ସମୁଦ୍ରରେ ବୁଡ଼ି ନ ଯାଇ ଭାସେ । ତା ଛଡ଼ା ପ୍ରତି ଜାହାଜରେ "ଲାଇଫ୍ ବେଲ୍ଟ" ଓ "ଲାଇଫ୍ ବୋଟ୍" ମଧ୍ୟ ଥାଏ ଏବଂ ବେତାର ଟେଲିଗ୍ରାଫ୍‌ର କଳ ମଧ୍ୟ ବସାଯାଇ ଥାଏ । ଜାହାଜରେ ବିପଦର ସମ୍ଭାବନା ହେଲେ ବେତାର ଟେଲିଗ୍ରାଫ୍ ଦ୍ୱାରା ସମୁଦ୍ରରେ ଥିବା ଅନ୍ୟ ଜାହାଜମାନଙ୍କୁ ଖବର ଦିଆଯାଏ । ସାଙ୍ଗେ ସାଙ୍ଗେ ଅନ୍ୟ ଜାହାଜ ଆସି ବିପନ୍ନ ଜାହାଜକୁ ଉଦ୍ଧାର କରେ । ସବୁ ଜାହାଜରେ ଦିଗ ନିର୍ଣ୍ଣୟ କରିବାର ଯନ୍ତ୍ର ଥାଏ । ତା ସାହାଯ୍ୟରେ ଘୋର ଅନ୍ଧାର ରାତିରେ ମଧ୍ୟ ଲୋକେ ନିଶ୍ଚିନ୍ତ ହୋଇ ଜାହାଜ ଚଳାନ୍ତି ।

## ପ୍ରଶ୍ନ

୧ । ପୂର୍ବକାଳରେ ଜାହାଜ କିପରି ଭାବରେ ସମୁଦ୍ରରେ ଚାଲୁଥିଲା ଏବଂ ତଦ୍ୱାରା କିପରି ଅସୁବିଧା ହେଉଥିଲା ?

୨ । ଫାଲ୍‌ଟନ୍ କି ଉପାୟରେ ଷ୍ଟିମ୍ ବୋଟ୍ ଚଳାଇଥିଲେ ?

୩ । ଫାଲ୍‌ଟନ୍‌ଙ୍କ ଷ୍ଟିମ୍ ବୋଟ୍ ସମୁଦ୍ରରେ ଚାଲିବାରେ କାହିଁକି ଅନୁପଯୁକ୍ତ ପ୍ରମାଣିତ ହେଲା ?

୪ । ବର୍ତ୍ତମାନ ଯୁଗରେ ଜାହାଜରେ ଯିବା ଆସିବା କରିବାପାଇଁ କିପରି ବିଶେଷ ସୁବିଧା କରାଯାଇଅଛି ?

## ହୁଏନସାଂ

ବହୁକାଳ ଯାଏ ଦେଶରେ ବୌଦ୍ଧଧର୍ମ ଭାରି ପ୍ରଚଳିତ ଥିଲା; ବୁଦ୍ଧଦେବଙ୍କ ଆଦର୍ଶରେ ଅନେକ ଚୀନବାସୀ ଅହିଂସା ଓ ତ୍ୟାଗମାର୍ଗ ଅବଲମ୍ବନ କରି ସନ୍ନ୍ୟାସୀ ହୋଇଥିଲେ । ହୁଏନସାଂ ଜଣେ ଚୀନବାସୀ ବୌଦ୍ଧ ସନ୍ନ୍ୟାସୀ । ସ୍ୱଦେଶରେ ନାନା ଶାସ୍ତ୍ର ଅଧ୍ୟୟନ କରି ସେ ନାନା ସ୍ଥାନ ଭ୍ରମଣପୂର୍ବକ ବହୁଜ୍ଞାନ ଲାଭ କରିଥିଲେ । ଶେଷରେ ବୌଦ୍ଧଧର୍ମର ଅଦଳାଲାକ୍ଷେତ୍ର ପୁଣ୍ୟଭୂମି ଭାରତ ଦେଖିବାକୁ ତାଙ୍କର ବଡ଼ ଆଗ୍ରହ ଜାତ ହେଲା । ସେ ଚୀନଦେଶରୁ ବାହାରି ସ୍ଥଳପଥରେ ଅନେକ ଗିରି, ନଦୀ, ବନ, ମରୁଭୂମି ପାରି ହୋଇ ତତାର ଦେଶ ଓ ଆଫଗାନସ୍ଥାନ ବାଟେ ବହୁ କଷ୍ଟରେ ଅନେକ ବର୍ଷ ପରେ ୬୨୯ ଖ୍ରୀଷ୍ଟାବ୍ଦରେ ଭାରତ-ବର୍ଷରେ ପହଞ୍ଚିଥିଲେ । ସେ ପ୍ରାୟ ୧୬ ବର୍ଷ ଏ ଦେଶରେ ରହିଥିଲେ ଓ ସମଗ୍ର ଭାରତବର୍ଷ ବୁଲି ବଭିନ୍ନ ପ୍ରଦେଶ ସମ୍ବନ୍ଧରେ ଅନେକ କଥା ତାଙ୍କ ଭ୍ରମଣବୃତ୍ତାନ୍ତରେ ଲେଖି ଯାଇଅଛନ୍ତି । ଆମ ଜନ୍ମଭୂମି ଏହି ଉତ୍କଳ-ପ୍ରଦେଶରେ ମଧ୍ୟ ସେହି ପ୍ରସିଦ୍ଧ ଚୀନ ପରିବ୍ରାଜକଙ୍କ ପାଦ ପଡ଼ିଥିଲା ଏବଂ ସେ ଆମ ଦେଶର ଅନେକ ସ୍ଥାନ ବୁଲି ଅନେକ କଥା ଲେଖି ଯାଇଅଛନ୍ତି । ସେ ଗୁପ୍ତବଂଶୀୟ ରାଜାମାନଙ୍କ କୀର୍ତ୍ତି ଏବଂ ମଗଧ ଓ ମାଳବରେ ବିଦ୍ୟାଚର୍ଚ୍ଚା ଦେଖି ଭାରି ମୁଗ୍ଧ ହୋଇଥିଲେ । ସେତେବେଳେ ପାଟଳୀପୁତ୍ର ନଗର ଧ୍ୱଂସପ୍ରାପ୍ତ ହୋଇ ଯାଇଥିଲା ଓ ଗୁଜରାଟ ଦେଶ ଧନ ଓ ବାଣିଜ୍ୟର କେନ୍ଦ୍ରସ୍ଥଳ ଥିଲା । ରାଜକର୍ମଚାରୀମାନେ ବେତନରୂପେ ଭୂମି ପାଉଥିଲେ । ଲୋକେ ଉତ୍ପନ୍ନ ଶସ୍ୟର ଛଅଭାଗରୁ ଏକଭାଗ ମାତ୍ର ରାଜକରରୂପେ ପ୍ରଦାନ କରୁଥିଲେ ।

ସାଧାରଣ ଲୋକେ ସାଧୁ ଓ ଚରିତ୍ରବାନ୍ ଥିଲେ । ବୌଦ୍ଧଧର୍ମର ପ୍ରଭାବ ସେତେବେଳକୁ କମି ଆସିଥିଲା ଏବଂ ହିନ୍ଦୁଧର୍ମ ପୁଣି ମୁଣ୍ଡ ଟେକୁଥିଲା; କିନ୍ତୁ ଧର୍ମ ବିଷୟରେ ଲୋକେ ବଡ଼ ଉଦାର ଥିଲେ । କୌଣସି ଧର୍ମାବଲମ୍ବୀ ଅନ୍ୟ ଧର୍ମାବଲମ୍ବୀ ପ୍ରତି କୌଣସିଠାରେ ଅତ୍ୟାଚାର କରୁଥିବା କଥା ହୁଏନ୍‌ସାଂଙ୍କ ଆଖିରେ ପଡ଼ି ନାହିଁ ।

ହୁଏନ୍‌ସାଂ କହନ୍ତି, ସେତେବେଳେ ଏ ଦେଶରେ ସାନ ବଡ଼ ହୋଇ ୧୩୯ଟି ରାଜ୍ୟ ଥିଲା । ତନ୍ମଧ୍ୟରେ ୧୧୦ ଗୋଟି ରାଜ୍ୟରେ ସେ ବୁଲିଥିଲେ । ଏହି ରାଜ୍ୟମାନଙ୍କ ମଧ୍ୟରେ ଉତ୍ତର ଭାରତରେ କନୌଜ ବା କାନ୍ୟାକୁବ୍‌ଜ ରାଜ୍ୟ ପ୍ରସିଦ୍ଧ ଥିଲା । ମହାରାଜ ହର୍ଷବର୍ଦ୍ଧନ ସେହି ରାଜ୍ୟରେ ରାଜତ୍ୱ କରୁଥିଲେ । ତାଙ୍କର ଅନ୍ୟ ନାମ ଥିଲା ଶିଳାଦିତ୍ୟ । ହର୍ଷ ଯେପରି ବୀର, ସେହିପରି ବିଦ୍ୱାନ୍ ଓ ଧର୍ମପରାୟଣ ଥିଲେ । ହିନ୍ଦୁ ଧର୍ମାବଲମ୍ବୀ ହେଲେହେଁ ବୌଦ୍ଧଧର୍ମ ପ୍ରତି ହର୍ଷଙ୍କର ପ୍ରଗାଢ଼ ଅନୁରାଗ ଥିଲା । ସେ ବୁଦ୍ଧଦେବଙ୍କୁ ଭାରି ଭକ୍ତି କରୁଥିଲେ ଏବଂ ନିଜ ରାଜ୍ୟ ମଧ୍ୟରେ ବୌଦ୍ଧବିହାରମାନଙ୍କର ଉନ୍ନତି କରିବାପାଇଁ ପ୍ରଚୁର ଧନ ବ୍ୟୟ କରୁଥିଲେ । ପ୍ରଜାମାନଙ୍କୁ ଜୀବହତ୍ୟା ଓ ମାଂସ ଭକ୍ଷଣରୁ ନିବୃତ୍ତ କରାଇବାପାଇଁ ସେ ନାନାଭାବରେ ଯତ୍ନ କରୁଥିଲେ । ରାଜା ସ୍ୱୟଂ ତାଙ୍କ ରାଜ୍ୟ ମଧ୍ୟରେ ବୁଲି ପ୍ରଜାମାନଙ୍କର ଅବସ୍ଥା ଦେଖୁଥିଲେ ଏବଂ ଭ୍ରମଣକାରୀ ଓ ଅତିଥିମାନଙ୍କପାଇଁ ସବୁଠାରେ ସୁବ୍ୟବସ୍ଥା କରାଇଥିଲେ । ହୁଏନ୍‌ସାଂ ନାନା ସ୍ଥାନରେ ବୁଲି ବୁଲି ଯେତେବେଳେ ମଗଧରେ ପହଞ୍ଚିଲେ, ସେତେବେଳେ ନାଳନ୍ଦା ନାମକ ସ୍ଥାନରେ ଗୋଟିଏ ପ୍ରସିଦ୍ଧ ବିଦ୍ୟାଳୟ ଦେଖିଥିଲେ । ସେଠାରେ ଆସିଆ ମହାଦେଶରେ ସବୁ ଦେଶରୁ ଅନେକ ଛାତ୍ର ପଢ଼ୁଥିଲେ ଏବଂ ଦଶହଜାର ସନ୍ନ୍ୟାସୀ ପଣ୍ଡିତ ଶିକ୍ଷକତା କରୁଥିଲେ ।

ହୁଏନ୍‌ସାଂ ସେଠାରେ ପ୍ରାୟ ଦୁଇବର୍ଷ ଶିଷ୍ୟଭାବରେ ରହି ବିଦ୍ୟା-ଶିକ୍ଷା କରିଥିଲେ ।

ହର୍ଷ ନିଜେ ଯେପରି ମହାପଣ୍ଡିତ ଥିଲେ, ଅନେକ ବଡ଼ ବଡ଼ ପଣ୍ଡିତଙ୍କୁ ମଧ୍ୟ ନିଜ ସଭାରେ ରଖାଇଥିଲେ । ନିଜେ ମହାରାଜ ଅନେକ ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ ଓ ତାଙ୍କ ସଭାର ବିଖ୍ୟାତ ପଣ୍ଡିତ ବାଣଭଟ୍ଟ କାଦମ୍ବରୀ ଓ ହର୍ଷଚରିତ ନାମକ ଦୁଇଖଣ୍ଡି ବିଖ୍ୟାତ ସଂସ୍କୃତ ଗ୍ରନ୍ଥ ରଚନା କରିଥିଲେ । ବିକ୍ରମାଦିତ୍ୟଙ୍କ ପରି ଏ ମଧ୍ୟ ସଂସ୍କୃତ ଭାଷାର ଉନ୍ନତି ପାଇଁ ନାନାଭାବରେ ଚେଷ୍ଟା କରିଥିଲେ ।

ପ୍ରାୟ ଦଶବର୍ଷ ଭାରତର ନାନା ସ୍ଥାନରେ ବୁଲି ସଂସ୍କୃତ ଭାଷା ଶିକ୍ଷା କରିବା ସାଙ୍ଗେ ସାଙ୍ଗେ ହୁଏନ୍‌ସାଂ ବୌଦ୍ଧଧର୍ମ ସମ୍ବନ୍ଧରେ ଅନେକ ତଥ୍ୟ ସଂଗ୍ରହ କରି ଶେଷରେ କାମରୂପ ରାଜ୍ୟରେ (ଆଧୁନିକ ଆସାମ) ସେଠା ରାଜାଙ୍କର ଅତିଥି ରୂପେ ଅବସ୍ଥାନ କରୁଥିଲେ । ଏହି ସମୟରେ ମହାରାଜ ହର୍ଷବର୍ଦ୍ଧନ ତାଙ୍କ ରାଜଧାନୀକୁ ତାଙ୍କୁ ନିମନ୍ତ୍ରଣ କରି ପଠାଇଲେ । ହୁଏନ୍‌ସାଂ ଆନନ୍ଦରେ କାନ୍ୟକୁବ୍ଜରେ ଉପସ୍ଥିତ ହୋଇ ରାଜାଙ୍କ ଅତିଥି ରୂପେ ସେଠାରେ ରହିଲେ । କିଛିଦିନ ପରେ ମହାରାଜ ହର୍ଷ କୋଡ଼ିଏ ଜଣ ସାମନ୍ତ ରାଜା ଓ ହୁଏନ୍‌ସାଂଙ୍କ ସଙ୍ଗେ ଗଙ୍ଗା ଯମୁନାର ସଙ୍ଗମସ୍ଥଳ ପ୍ରୟାଗକୁ ଯାତ୍ରା କଲେ । ସେତେବେଳେ ପୌଷ ମାସ; ଗଙ୍ଗା ବା ଯମୁନା ନଦୀରେ ବଢ଼ିର ଭୟ ନ ଥାଏ । ସେଠାରେ ସେ ବର୍ଷ ହର୍ଷଙ୍କର ଷଷ୍ଠ ଧର୍ମମହୋତ୍ସବ ଆରମ୍ଭ ହେଲା । ପରିଷ୍କୃତ

ମନୋହର ଉଭୟ ନଦୀର ବାଲୁକାଶଯ୍ୟାରେ ରାଜ୍ୟବାସୀ ସହସ୍ର ସହସ୍ର ଲୋକ ଜମା ହେଲେ । ହିନ୍ଦୁ ଓ ବୌଦ୍ଧଧର୍ମାବଲମ୍ବୀ ବଡ଼ ବଡ଼ ପଣ୍ଡିତମାନଙ୍କ ମଧ୍ୟରେ ସେଠାରେ ଧର୍ମର ଆଲୋଚନା ଚାଲିଲା । ଉତ୍ସବର ପ୍ରଥମ ଦିନ ବୁଦ୍ଧଦେବଙ୍କୁ, ଦ୍ୱିତୀୟ ଦିନ ସୂର୍ଯ୍ୟଙ୍କୁ ଓ ତୃତୀୟ ଦିନ ଶିବଙ୍କ ପ୍ରତି ସମ୍ମାନ ଓ ଭକ୍ତି ପ୍ରଦର୍ଶିତ ହୋଇ-ଥିଲା ।

ରାଜଭଣ୍ଡାରରେ ଯେତେ ଧନରତ୍ନ, ସଞ୍ଚିତ ହୋଇଥାଏ, ଶିଲାଦିତ୍ୟ ପ୍ରତି ପାଞ୍ଚ ବର୍ଷରେ ଏହିପରି ମହୋତ୍ସବ ଶେଷରେ ସେ ସବୁ ରାଜ୍ୟବାସୀ ଦୀନ, ଦୁଃଖୀ ବ୍ରାହ୍ମଣ ବୌଦ୍ଧ ସମସ୍ତଙ୍କ ଅଭାବରେ ଦାନ କରୁଥିଲେ ଓ ୭୫ ଦିନ ପର୍ଯ୍ୟନ୍ତ ଏହି ମହୋତ୍ସବ ଅନୁଷ୍ଠିତ ହେଉଥିଲା । ପ୍ରତ୍ୟେକ ଦିନ ଉପସ୍ଥିତ ଲୋକମାନଙ୍କୁ ନାନାବିଧ ଖାଦ୍ୟପାନୀୟ ପ୍ରଚୁର ପରିମାଣରେ ଦିଆଯାଉଥିଲା । ହୁଏନ୍ ସାଂ ଏହିସବୁ ଦାନ ଓ ଉତ୍ସବ କଥା ସ୍ୱ ଚକ୍ଷୁରେ ଦେଖି ତାଙ୍କ ଭ୍ରମଣବିବରଣୀରେ ଲିପିବଦ୍ଧ କରି ପାଇଅଛନ୍ତି । ଶେଷ ଦିନ ମହାରାଜ ହର୍ଷ ନିଜ ଶରୀରରୁ ବହୁମୂଲ୍ୟ ବସ୍ତ୍ର, ଅଳଙ୍କାର ପ୍ରଭୃତି ବାହାର କରି ପାଖରେ ଠିଆ ହୋଇଥିବା ଲୋକମାନଙ୍କ ମଧ୍ୟରେ ବାଣ୍ଟିଦେଇ ନିଜେ ସାଧାରଣ ଲୋକଙ୍କ ପରି ଲୁଗା ପିନ୍ଧି ତ୍ୟାଗର ଉଜ୍ଜ୍ୱଳ ଆଦର୍ଶ ଦେଖାଉଥିଲେ ।

ଉତ୍ସବ ଶେଷରେ ହୁଏନ୍ ସାଂ ରାଜାଙ୍କଠାରୁ ନାନାପ୍ରକାର ଦ୍ରବ୍ୟ ଉପହାରରୂପେ ପାଇ ସ୍ୱଦେଶକୁ ଫେରିଲେ । ସମ୍ରାଟଙ୍କ ଆଦେଶରେ ଜଣେ ରାଜା କେତେକ ଶରୀରରକ୍ଷୀ ସୈନ୍ୟଙ୍କ ସଙ୍ଗେ ତାଙ୍କର ସହଯାତ୍ରୀ ହୋଇଥିଲେ । ସେ ଏ ଦେଶରେ ଦୀର୍ଘକାଳ

ରହୁ ଯେଉଁ ସବୁ ବୌଦ୍ଧ ଧର୍ମଗ୍ରନ୍ଥ ଓ ବୁଦ୍ଧଦେବଙ୍କ ସ୍ମୃତି ସମ୍ବନ୍ଧୀୟ ବସ୍ତୁ ସଗ୍ରହ କରିଥିଲେ, କୋଡ଼ିଏ ଗୋଟି ଘୋଡ଼ାଙ୍କ ଉପରେ ସେଗୁଡ଼ିକ ବୋଝାଇ କରି ନିଜ ଦେଶକୁ ନେଇ ଯାଇଥିଲେ ।

ହୁଏନ୍‌ସାଂ ପାଟଳୀପୁତ୍ରରୁ ତମଲୁକ ବାଟେ ଆମ ଓଡ଼ିଶାକୁ ଆସିଥିଲେ । ତମଲୁକ ଏବେ ମେଦିନୀପୁର ଜିଲ୍ଲାରେ ଅବସ୍ଥିତ । ସେ ଲେଖିଅଛନ୍ତି, ତାହା ଗୋଟିଏ ବଡ଼ ବନ୍ଦର ଥିଲା । ନାନା-ଦେଶରୁ ଅନେକ ଜାହାଜ ସେଠାକୁ ଆସୁଥିଲା । ଓଡ଼ିଶାରେ ହିନ୍ଦୁ ଓ ବୌଦ୍ଧ ଉଭୟ ଧର୍ମାବଲମ୍ବୀ ଲୋକ ଥିଲେ । ଏ ଦେଶର ପରିଧି ୧୪୦ ମାଇଲ ଥିଲା । ଚେଳିତାଲୋ ବା ଚରିତ୍ର ବନ୍ଦର ଏ ଦେଶର ରାଜଧାନୀ ଥିଲା * । ଏହି ନଗରର ପରିଧି ଥିଲା ପ୍ରାୟ ୩୫ ମାଇଲ । ନଗର ଚାରିପାଖରେ ଗୋଟିଏ ବଡ଼ ପଥର ପାଚେରି ଥିଲା । ଜଙ୍ଗଲର ଭୂମି ବଡ଼ ଉର୍ବର ଥିଲା । ନାନାପ୍ରକାର ଅଦ୍ଭୁତ ଗୁଳ୍ମ ଓ ବୃକ୍ଷ ଏଦେଶରେ ପୂରି ରହିଥିଲା । ଲୋକଙ୍କ ମଧ୍ୟରେ ବିଦ୍ୟାର ଆଦର ଥିଲା । ରାଜ୍ୟର ଚାରିଆଡ଼େ ବହୁଶତ ବୌଦ୍ଧମଠ ଥିଲା ଓ ଦଶସହସ୍ର ବୌଦ୍ଧସନ୍ନ୍ୟାସୀ ତହିଁରେ ବାସ କରୁଥିଲେ ।

ପ୍ରଶ୍ନ

୨ । ହୁଏନ୍‌ସାଂ କେଉଁ ବାଟେ ଚୀନଦେଶରୁ ଭାରତକୁ ଆସିଥିଲେ ?

---

* ଐତିହାସିକ ପଣ୍ଡିତ କୃପାସିନ୍ଧୁ ମିଶ୍ର କହନ୍ତି, କୋଣାର୍କର ନାମ ସେକାଳରେ ଚେଳିତୋଲା ଥିଲା ।

୨ । ହୁଏନ୍‌ସାଂ ହର୍ଷବର୍ଦ୍ଧନଙ୍କ ରାଜତ୍ୱ ସମ୍ବନ୍ଧରେ କଅଣ ଲେଖି ଅଛନ୍ତି ? ସେଥିରୁ ଏ ଦେଶର ସେକାଳ ପ୍ରଜାମାନଙ୍କ ଅବସ୍ଥା ସମ୍ବନ୍ଧରେ କଅଣ ଜଣାଯାଏ ?

୩ । ଯେଉଁ ଉଦ୍ଦେଶ୍ୟରେ ହୁଏନସାଂ ଏଦେଶକୁ ଆସିଥିଲେ ତାଙ୍କର ସେ ଉଦ୍ଦେଶ୍ୟ କେତେଦୂର କାର୍ଯ୍ୟରେ ପରିଣତ ହୋଇଥିଲା ।

---

## ଶଙ୍କରାଚାର୍ଯ୍ୟ

ବର୍ତ୍ତମାନ ଭାରତର ଅଧିକାଂଶ ଯେଉଁ ଧର୍ମ ଗ୍ରହଣ କରିଅଛନ୍ତି, ତାହାର ନାମ ହିନ୍ଦୁଧର୍ମ । ଆଗେ ଏହାର ନାମ ହିନ୍ଦୁଧର୍ମ ନ ଥିଲା, ଏହାକୁ ବୈଦିକ ଧର୍ମ ବା ସନାତନ ଧର୍ମ ବୋଲି କହୁଥିଲେ । ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ଏ ଦେଶରେ ବୈଦିକ ଧର୍ମ ଭାରି ପ୍ରବଳ ଥିଲା । ବେଦରେ ଯଜ୍ଞ କରିବାର ବିଧି ଥିଲା ଓ ପଶୁମାନଙ୍କୁ ମାରି ଯଜ୍ଞରେ ବଳି ଦିଆଯାଉଥିଲା । ଧର୍ମ ନାମରେ ଜୀବହତ୍ୟା ହେଉଥିବା ଦେଖି ବୁଦ୍ଧଦେବଙ୍କ ମନରେ ବଡ଼ ଦୟା ଜାତ ହେଲା । ସେ ବେଦକୁ ନିନ୍ଦା କରି ଯେଉଁ ଧର୍ମ ପ୍ରଚାର କରିଥିଲେ, ତାହାର ନାମ ବୌଦ୍ଧଧର୍ମ । ବୁଦ୍ଧଦେବଙ୍କ ପରେ ପ୍ରାୟ ଏକ ହଜାର ବର୍ଷ ବୌଦ୍ଧଧର୍ମ ଏ ଦେଶରେ ଚଳୁଥିଲା । ଏ ଦେଶରେ ରାଜା ମହାରାଜା ଓ ଅଧିକାଂଶ ଲୋକ ବୌଦ୍ଧଧର୍ମ ଗ୍ରହଣ କରିଥିଲେ, ମାତ୍ର ବ୍ରାହ୍ମଣମାନେ ବୌଦ୍ଧଧର୍ମ ଗ୍ରହଣ କରି ନ ଥିଲେ । ସେମାନେ ପୁରାତନ ବୈଦିକ ଧର୍ମ ଅନୁସାରେ ଚଳୁଥିଲେ । କ୍ରମେ ବୌଦ୍ଧ-ମାନଙ୍କ ମଧ୍ୟରେ ନାନା ମତ ଦେଖା ଦେଲା । ବୁଦ୍ଧଦେବ ଯେଉଁ ନୀତି ପ୍ରଚାର କରି ଯାଇଥିଲେ ଲୋକେ ସେ ସବୁ ଭୁଲିଯାଇ ନାନା

ପ୍ରଚାର ଅଭାର୍ଯ୍ୟ କଲେ । ଏହି ସମୟରେ ଯେଉଁ ଅସାଧାରଣ ଶକ୍ତିସମ୍ପନ୍ନ ମହାପୁରୁଷ ଜନ୍ମଗ୍ରହଣ କରି ବୌଦ୍ଧଧର୍ମର ଦୋଷ, ଦୁର୍ବଳତା ଦେଖାଇ ବୈଦିକ ଧର୍ମ ବା ବ୍ରାହ୍ମଣ୍ୟଧର୍ମକୁ ପୁଣି ପ୍ରତିଷ୍ଠା କରିଥିଲେ, ତାହାଙ୍କ ନାମ ଶଙ୍କରାଚାର୍ଯ୍ୟ ।

ଦାକ୍ଷିଣାତ୍ୟରେ ତ୍ରିବାଙ୍କୋଡ଼ ନାମରେ ଯେଉଁ ଦେଶୀୟ ରାଜ୍ୟ ଅଛି, ତାହା ମଧ୍ୟରେ ଥିବା ମାଲବାର ପ୍ରଦେଶରେ ଜଣେ ଦରିଦ୍ର ବ୍ରାହ୍ମଣ ଘରେ ୭୮୮ ଖ୍ରୀଷ୍ଟାବ୍ଦରେ ଶଙ୍କରାଚାର୍ଯ୍ୟ ଜନ୍ମଗ୍ରହଣ କରିଥିଲେ । ଅସାଧାରଣ ଶକ୍ତି ଓ ପ୍ରତିଭା ଘେନି ସେ ଭୂମିଷ୍ଠ ହୋଇଥିଲେ । ଅଳ୍ପ ବୟସରେ ସଂସ୍କୃତ ଭାଷାରେ ଜ୍ଞାନଲାଭ କରି ଶଙ୍କରାଚାର୍ଯ୍ୟ ନାନା ଶାସ୍ତ୍ରରେ ପଣ୍ଡିତ ଥିଲେ ।

ଘରେ ବୁଢ଼ୀ ବିଧବା ମାଆଙ୍କ ଛଡ଼ା ଅନ୍ୟ କେହି ନ ଥିଲେ । ମାଆଙ୍କୁ ଘରେ ଏକାକୀ ଛାଡ଼ିଦେଇ ସେ ଅଧିକ ଜ୍ଞାନଲାଭ ଆଶାରେ ସନ୍ନ୍ୟାସୀ ହୋଇ ଦେଶ ବୁଲିବାକୁ ବାହାରିଲେ । କେତେକାଳ ପରେ ଘରକୁ ଫେରିଆସି ଦେଖିଲେ ଯେ, ବୁଢ଼ୀ ଜନନୀ ଅସୁସ୍ଥ ଶରୀରରେ ଶଯ୍ୟାରେ ପଡ଼ିଅଛନ୍ତି । ଜାତିମଧ୍ୟରୁ କୌଣସି ଲୋକ ତାହାଙ୍କୁ ପଗୃରୁ ନାହାନ୍ତି । ଏହା ଦେଖି ଶଙ୍କରାଚାର୍ଯ୍ୟ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ କାହାକୁ କିଛି ନ କହି ମାଆଙ୍କ ସେବାରେ ନିଯୁକ୍ତ ହେଲେ । ଅଳ୍ପଦିନ ପରେ ମାଆଙ୍କର ମୃତ୍ୟୁ ହେବାରୁ ସେ ନିଜ ଗୃହ ମଧ୍ୟରେ ମାଆଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଶେଷକରି ଚିରଦିନ ସକାଶେ ସଂସାର ତ୍ୟାଗ କଲେ ।

ନାନା ଶାସ୍ତ୍ର ସୁପଣ୍ଡିତ, ସର୍ବତ୍ୟାଗୀ, ମହାଯୋଗୀ ଶଙ୍କର ଗେରୁଆ ଲୁଗା ପିନ୍ଧି ଦଣ୍ଡ କମଣ୍ଡଳୁ ହାତରେ ଧରି ହିମାଦ୍ରିଠାରୁ

କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷ ଭ୍ରମଣ କରିଥିଲେ । ତାହାଙ୍କ ଅସାଧାରଣ ବୁଦ୍ଧି ଓ ଶକ୍ତି ଦେଖି ସେ ସମୟର ପଣ୍ଡିତମାନେ ଅବାକ୍ ହୋଇ ଯାଉଥିଲେ । ସେତେବେଳେ ଭାରତର ସବୁଆଡ଼େ ବୌଦ୍ଧ ପଣ୍ଡିତମାନେ ଅଦ୍ଭୁତଭାବରେ ବୌଦ୍ଧମତ ପ୍ରଚାର କରୁଥିଲେ । ଏହା ଦେଖି ମହାଯୋଗୀ ଶଙ୍କର ଭାରି ଦୁଃଖିତ ହୋଇଥିଲେ ଏବଂ ବଡ଼ ବଡ଼ ସଭାରେ ବୌଦ୍ଧ ପଣ୍ଡିତମାନଙ୍କୁ ଯୁକ୍ତିବଳରେ ପରାସ୍ତ କରି ବୈଦିକ ଧର୍ମମତକୁ ସମର୍ଥନ କରୁଥିଲେ । ଅନେକ ବୌଦ୍ଧ ପଣ୍ଡିତ ତାହାଙ୍କ ଯୁକ୍ତିରେ ପରାସ୍ତ ହୋଇ ଅନ୍ୟ ଉପାୟ ନ ଦେଖି ଆତ୍ମହତ୍ୟା କରିଥିଲେ । ଏହି ଭାବରେ ବୌଦ୍ଧ ପଣ୍ଡିତମାନେ ଆତ୍ମହତ୍ୟା କରିବାରୁ ସାଧାରଣ ଲୋକଙ୍କର ବୌଦ୍ଧଧର୍ମ ବିଷୟରେ ଆଗ୍ରହ କମିଗଲା ଏବଂ ଏ ଦେଶବାସୀ ରାଜା, ପ୍ରଜା ସମସ୍ତେ ବୌଦ୍ଧଧର୍ମ ତ୍ୟାଗ କରି ପୁନର୍ବାର ବୈଦିକ ଧର୍ମ ଗ୍ରହଣ କଲେ । ଏହା ବିଚାର କଲେ ଜାଣାଯିବ ଯେ, ସତେ ଯେପରି ଈଶ୍ୱରବିଶ୍ୱାସଶୂନ୍ୟ ବୌଦ୍ଧଧର୍ମକୁ ପବିତ୍ର ଭାରତଭୂମିରୁ ଦୂରକରିଦେଇ ଲୋକସାଧାରଣଙ୍କ ମନରେ ପୁନର୍ବାର ଈଶ୍ୱରବିଶ୍ୱାସ ଜାତ କରାଇବାପାଇଁ ଶଙ୍କରାଚାର୍ଯ୍ୟ ଏ ଦେଶରେ ଅବତୀର୍ଣ୍ଣ ହୋଇଥିଲେ । ତେଣୁ ଏ ଦେଶର ଲୋକେ ଶଙ୍କରାଚାର୍ଯ୍ୟଙ୍କୁ ସାକ୍ଷାତ୍ ଶଙ୍କର ବା ମହାଦେବଙ୍କ ଅବତାର ବୋଲି ମନେ କରୁଥିଲେ ।

ଶଙ୍କରଙ୍କ ପରେ ଏ ଦେଶରେ ଅନେକ ଶିବମନ୍ଦିର ଓ ମଠ ପ୍ରତିଷ୍ଠିତ ହୋଇଥିଲା ଏବଂ ଶୈବଧର୍ମ ଏ ଦେଶରେ ପ୍ରଚଳିତ ହୋଇଥିଲା ।

ଶଙ୍କର ବୈଦିକ ଧର୍ମ ପ୍ରଚାର କରିବାପାଇଁ ଓ ଈଶ୍ୱରବିଶ୍ୱାସ ଦୃଢ଼ କରିବାପାଇଁ ବେଦାନ୍ତ ନାମକ ହିନ୍ଦୁ ଦର୍ଶନଶାସ୍ତ୍ର ଉପରେ

ଗୋଟିଏ ଭାଷ୍ୟ ଲେଖିଥିଲେ । ଏହା ଅଦ୍ୱୈତ ମତ ନାମରେ ଭାରତରେ ପ୍ରସିଦ୍ଧ । ତା ଛଡ଼ା ଉପନିଷଦ୍ ଓ ଶ୍ରୀମଦ୍ ଭଗବଦ୍‌ଗୀତା ଉପରେ ମଧ୍ୟ ସେ ଭାଷ୍ୟ ଲେଖି ଯାଇଅଛନ୍ତି । ସେ ଏକେଶ୍ୱରବାଦୀ ହେଲେହେଁ ସାଧାରଣ ଲୋକଙ୍କୁ ଶୈବ ଧର୍ମରେ ଦୀକ୍ଷିତ କରୁଥିଲେ । ଲକ୍ଷ ଲକ୍ଷ ଲୋକ ତାଙ୍କ ମତ ଗ୍ରହଣ କରି ତାହାଙ୍କର ଶିଷ୍ୟ ହୋଇଥିଲେ । ତାଙ୍କ ଭାଷ୍ୟ ଓ ଗ୍ରନ୍ଥମାନ ପଢ଼ିଲେ ଶଙ୍କରାଚାର୍ଯ୍ୟ କେତେ ପ୍ରତିଭାଶାଳୀ ମହାପୁରୁଷ ଥିଲେ ଜଣାପଡ଼େ । ତାଙ୍କ ଭଳି ମହାପଣ୍ଡିତ ଏ ଦେଶରେ ଆଉ ଜନ୍ମି ନାହାନ୍ତି । ସେ ୩୨ ବର୍ଷ ବୟସରେ ହିମାଳୟ ପ୍ରଦେଶର କେଦାରନାଥ ନାମକ ସ୍ଥାନରେ ଶରୀର ତ୍ୟାଗ କରିଥିଲେ । ସେ ଅନେକ ମଠ ପ୍ରତିଷ୍ଠା କରିଥିଲେ । ତନ୍ମଧ୍ୟରେ ହିମାଳୟ ପର୍ବତ ଉପରେ ଜ୍ୟୋତିର୍ମଠ ବା ଯୋଶୀମଠ, ଦ୍ୱାରକାରେ ସାରଦାମଠ, ଦକ୍ଷିଣରେ ଶୃଙ୍ଗେରୀ ମଠ ଓ ଆମ ପୁରୀରେ ଗୋବର୍ଦ୍ଧନ ମଠ ପ୍ରଧାନ । ଆଜିଯାଏ ସେ ସବୁ ମଠ ପ୍ରତିଷ୍ଠିତ ରହି ଶଙ୍କରାଚାର୍ଯ୍ୟଙ୍କର ମହିମା ଗାନ କରୁଅଛି ।

## ପ୍ରଶ୍ନ

୧ । ଶଙ୍କରାଚାର୍ଯ୍ୟ କି କାର୍ଯ୍ୟ କରିବାକୁ ଭାରତରେ ଜନ୍ମଗ୍ରହଣ କରିଥିଲେ ?

୨ । ସନ୍ନ୍ୟାସୀ ଓ ଗୃହୀଙ୍କ ମଧ୍ୟରେ କିଏ ବଡ଼ ଓ କାହିଁକି ?

୩ । ଭାରତର କେଉଁ କେଉଁ ସ୍ଥାନରେ ଶଙ୍କରଙ୍କ ପ୍ରତିଷ୍ଠିତ ମଠ ଅଦ୍ୟାପି ରହିଅଛି ?



# ଜଳଘଡ଼ି

ପୃଥିବୀରେ ଆଦି ମାନବ ସମାଜ ସୂର୍ଯ୍ୟ ଉଦୟ ଓ ଅସ୍ତ ଦେଖି ଦିନ ଓ ରାତି ହେଉଛି ବୋଲି ବୁଝୁଥିଲେ । ସେତେବେଳେ ସୂର୍ଯ୍ୟ ଥିଲା, ସେମାନଙ୍କର ଏକମାତ୍ର ଘଡ଼ି ଏବଂ ସେମାନେ ସମୟକୁ ମୋଟାମୋଟି ଦିନ ଓ ରାତି ଦୁଇ ଭାଗରେ ବିଭକ୍ତ କରୁଥିଲେ । ଆକାଶରେ ସୂର୍ଯ୍ୟର ଅବସ୍ଥାନ ଦେଖି ସକାଳବେଳା, ଦୁଇପହର, ଅପରବେଳା ପ୍ରଭୃତି ସେମାନେ ଠିକ୍ କରି ପାରୁଥିଲେ । ତାପରେ ଯେତେବେଳେ ମନୁଷ୍ୟର ଜ୍ଞାନ ଓ ବୁଦ୍ଧି ବଢ଼ିଲା, ସେତେବେଳେ ସେ ଲକ୍ଷ୍ୟ କରି ଦେଖିଲା ଯେ ଆକାଶରେ ସୂର୍ଯ୍ୟର ଅବସ୍ଥାନ ଅନୁସାରେ ପୃଥିବୀ ଉପରେ ଥିବା ପଦାର୍ଥମାନଙ୍କର ଛାଇ ବଢ଼େ ଓ କମେ । ଖୋଲା ସ୍ଥାନରେ ଖଣ୍ଡେ କାଠି ସିଧା କରି ପୋତିଲେ ସକାଳ, ଦୁଇପହର ଓ ସନ୍ଧ୍ୟାରେ ଛାଇ କିପରି କମ୍ ବେଶୀ ହୁଏ ସହଜରେ ଜଣାପଡ଼ିବ । ଏହି କଥା ଦେଖି ଦେଖି ମନୁଷ୍ୟର ଛାଇ ମାପି ସମୟ ନିର୍ଣ୍ଣୟ କରିବାକୁ ଆରମ୍ଭ କଲା । ତାହାକୁ କୁହାଗଲା "ସୂର୍ଯ୍ୟଘଡ଼ି ।" କାଠ ଖଣ୍ଡରେ ବା ପକ୍କା ପିଣ୍ଡାରେ ଖଣ୍ଡେ ଶଙ୍କୁଦଣ୍ଡ ବା ସିଧା କାଠି ପୋତି ତହିଁରେ କଟାଯାଇଥିବା ରେଖା ଉପରେ ଶଙ୍କୁଦଣ୍ଡର ଛାଇ ପଡ଼ିବା ଦେଖିଲେ ଠିକ୍ ବେଳ ଜଣାପଡ଼େ । ନାନାପ୍ରକାରେ ସୂର୍ଯ୍ୟଘଡ଼ି ଅଛି । ମେଘୁଆ ପାଗରେ ବା ରାତିରେ ସୂର୍ଯ୍ୟଘଡ଼ି ସାହାଯ୍ୟରେ ବେଳ ଜଣା ପଡ଼େ ନାହିଁ । ତେଣୁ ମନୁଷ୍ୟ ଏଥିପାଇଁ 'ଜଳଘଡ଼ି' ସୃଷ୍ଟି କଲା । ଗୋଟିଏ ପାତ୍ର ତଳେ କ୍ଷୁଦ୍ର ଛିଦ୍ରଟିଏ ଥାଏ । ପାତ୍ରକୁ ଜଳପୂର୍ଣ୍ଣ କରି ରଖିଦେଲେ ତହିଁରୁ ବିନ୍ଦୁ ବିନ୍ଦୁ ହୋଇ ପାଣି ତଳେ ପଡ଼େ । ନିର୍ଦ୍ଦିଷ୍ଟ କାଳରେ ପାତ୍ରଟି

ଜଳଶୂନ୍ୟ ହୋଇଗଲେ ଅନ୍ୟ ଗୋଟିଏ ସେହିପରି ପାତ୍ର ରଖି ଦିଆଯାଏ । ପାତ୍ରର ଭିତର ପାଖରେ ମଧ୍ୟ ୧, ୨, ୩, ପ୍ରଭୃତି ଚିହ୍ନ ଦିଆଯାଇଥାଏ । ତାହା ଦେଖି କେତେବେଳ ହେଲା ଜଣା ପଡ଼େ । ପରେ ଏଥିରେ କେତେକ ଅସୁବିଧା ହେବାରୁ ମନୁଷ୍ୟ ବାଲିଘଡ଼ି ସୃଷ୍ଟି କଲା । ଆମ ଓଡ଼ିଶାରେ ଏପରି ବାଲିଘଡ଼ିକୁ 'ଖୁସି' କହୁଥିଲେ । ଖୁସି ବା ସରୁ ତଳ ଛିଦ୍ର କରି ସରୁ ବାଲି ଦୁଇ ଦେଉଥିଲେ । ଜଳଘଡ଼ି ପରି ତହିଁରୁ ବାଲି କ୍ରମେ କ୍ରମେ ଶୂନ୍ୟ ହେବା ଦେଖି ବେଳ ସ୍ଥିର କରାଯାଉଥିଲା । କିନ୍ତୁ "କଳଘଣ୍ଟି" ବାହାରିବା ପରେ ଏବେ କେହି ଆଉ ସୂର୍ଯ୍ୟଘଡ଼ି, ଜଳଘଡ଼ି ବା ବାଲିଘଡ଼ିକୁ ପଚାରୁ ନାହାନ୍ତି ।

ସର୍ବ ପ୍ରଥମେ କିଏ କେବେ କଳଘଡ଼ି ଉଦ୍ଭାବନ କରିଥିଲେ, ତାହା ଜାଣିବାର ଉପାୟ ନାହିଁ । ଅନେକେ ଅନୁମାନ କରନ୍ତି, ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ପ୍ରଥମେ କଳଘଡ଼ି ଉଦ୍ଭାବିତ ହୋଇଥିଲା । ଇଟାଲିର ପ୍ରସିଦ୍ଧ ଜ୍ୟୋତିର୍ବିଦ ପଣ୍ଡିତ ଗାଲିଲି ଓ ସପ୍ତଦଶ ଶତାବ୍ଦୀରେ ପ୍ରଥମେ ପେଣ୍ଡୁଲମ୍ ଥିବା ଘଡ଼ି ବା ଦୋଳକଯୁକ୍ତ ଘଡ଼ିର ସୃଷ୍ଟି କରିଥିଲେ । ଦିନେ ଗାଲିଲିଓ ପୀସା ନଗରର ଗୀର୍ଜାରେ ଗୋଟିଏ ପିତ୍ତଳ-ଲଣ୍ଠନ ଦୋଳକକୁ ଲକ୍ଷ୍ୟ କରି ସ୍ଥିର କଲେ ଯେ ଏହା ଯେପରି ନିର୍ଦ୍ଦିଷ୍ଟ ନିୟମରେ ଓ ନିର୍ଦ୍ଦିଷ୍ଟ କାଳରେ ଆଗକୁ ଓ ପଛକୁ ଗତି କରୁଅଛି; ସେହିପରି କୌଣସି ଦୋଳକ ଆଗକୁ ପଛକୁ ଗତି କଲେ ତାହା ସାହାଯ୍ୟରେ ଘଡ଼ିର କଳ ନିୟମିତଭାବରେ ଗତି କରିବ । ଏହି କଥାକୁ ଆଲୋଚନା କରି ସେ ପେଣ୍ଡୁଲମ୍ ଲଗା ଘଡ଼ି ବା ଦୋଳକଯୁକ୍ତ ଘଡ଼ି ଉଦ୍ଭାବନ କଲେ । ଘଡ଼ିର କଳ

ନିୟମିତରୂପେ କାର୍ଯ୍ୟ କରିବାକୁ ତନ୍ମଧ୍ୟରେ ଲାଗିଥିବା କଣ୍ଟା ଦୁଇଗୋଟି ମଧ୍ୟ ଫଳକ ଉପରେ ନିୟମିତଭାବରେ ଗୁଳିତ ହୋଇ ସମୟ ନିର୍ଣ୍ଣୟ କରିଦେଲା । ଦୋଳକଟିକୁ ସର୍ବଦା ଗତିବିଶିଷ୍ଟ କରିବା-ପାଇଁ ପରେ ତାହାକୁ ଗୋଟିଏ ସ୍ପ୍ରିଙ୍ଗ ସଙ୍ଗେ ସଂଯୁକ୍ତ କରି ଦିଆଯାଇଅଛି । ସେହି ଦୋଳକଟିକୁ ଉପରକୁ ବା ତଳକୁ ଘୁସାଇଦେଲେ ଘଡ଼ିର ଗତି ଦ୍ରୁତ (fast) ବା ମୃଦୁ (slow) ହୁଏ । ହାତଘଡ଼ି ବା କ୍ଲକ୍ ଘଡ଼ି ଗୁଡ଼ିକରେ ଏହି ଦୋଳକଟିକୁ ଦେଖାଯାଏ ।

ଜଅର୍ ବା ଅନ୍ୟ ଘଡ଼ିଗୁଡ଼ିକର ଭିତରେ ରହସ୍ୟ ବୁଝିବା ବଡ଼ କଠିନ । ପ୍ରତ୍ୟେକ ଘଡ଼ି ଉପରେ ଦେଖିବ ଫଳକ ଥାଏ, ତାହାକୁ ବୃତ୍ତାକାରରେ ସମାନ ବାରଭାଗରେ ଓ ସେହି ପ୍ରତ୍ୟେକ ଭାଗକୁ ପୁଣି ତେମନ ସମାନ ପାଞ୍ଚ ଭାଗରେ ବିଭକ୍ତ କରାଯାଇଥାଏ । ତନ୍ମଧ୍ୟରେ ୧, ୨, ୩, ପ୍ରଭୃତି ସଂଖ୍ୟା ଲେଖାଯାଇଥାଏ । ଏହି ଅଙ୍କିତ ଫଳକ ଉପରେ ଦୁଇଗୋଟି କଣ୍ଟା ନିୟମିତରୂପେ ବୁଲେ । ଏଥିମଧ୍ୟରୁ ବଡ଼ କଣ୍ଟାଟି ମିନିଟ ଦେଖାଇଦିଏ ଓ ସାନ କଣ୍ଟାଟି ଘଣ୍ଟା ଦେଖାଏ



ପ୍ରତି ଘଡ଼ିରେ କଣ୍ଟା ଦୁଇଗୋଟିକୁ ଏପରିଭାବରେ ସଂଲଗ୍ନ କରାଯାଇ-ଥାଏ ଯେ, ସାନକଣ୍ଟାଟି ୬୦ ଭାଗରୁ ୫ ଭାଗ ବୁଲିଲେ ବଡ଼ କଣ୍ଟା-ସମୁଦାୟ ଘଡ଼ିର ଚକ୍ର ଅର୍ଥାତ୍ ୬୦ ଭାଗ ବୁଲି ଆସେ ।

ଏହି ଘଣ୍ଟା ଦୁଇଗୋଟି ଘଡ଼ି ଭିତରେ ଥିବା ଯନ୍ତ୍ର ସାହାଯ୍ୟରେ ଚଳେ । ଏହି ଯନ୍ତ୍ର ମଧ୍ୟରେ ଦାନ୍ତ ଥିବା ଅନେକଗୁଡ଼ିଏ ସାନ ବଡ଼ ଚକ ଥାଏ ଏବଂ ଏହି ଚକଗୁଡ଼ିକ ଏପରି ଭାବରେ ପରସ୍ପର ସଂଯୁକ୍ତ ଥାଏ ଯେ, ସେଥିରୁ ଗୋଟିଏ ଚକ ଚଳିଲେ ଅନ୍ୟ ସମସ୍ତ ଚକ ଚଳେ । ଗୋଟିଏ ଚକ ସାହାଯ୍ୟରେ ଘଣ୍ଟା କଣ୍ଟାଟି ଧୀରେ ଧୀରେ ବୁଲେ ଓ ଅନ୍ୟ ଚକ ସାହାଯ୍ୟରେ ମିନିଟ୍ କଣ୍ଟାଟି ତାଠାରୁ ଚଞ୍ଚଳ ବୁଲେ । ଘଡ଼ିଭିତରେ ଥିବା ଗୋଟିଏ ସ୍ପ୍ରିଙ୍ଗ ବଳରେ ସବୁ ଚକ ବୁଲୁଥାଏ । ଏହି ସ୍ପ୍ରିଙ୍ଗକୁ ଘଡ଼ିର ପ୍ରାଣ କହିଲେ ଚଳେ । ପ୍ରତିଦିନ କିମ୍ବା ପ୍ରତି ସପ୍ତାହରେ ଥରେ ଲେଖାଏଁ ଘଡ଼ିରେ ଚାବି ଦେଇ ଏହି ସ୍ପ୍ରିଙ୍ଗ୍‌କୁ ସଙ୍କୁଚିତ କରିଦିଆଯାଏ । ସଙ୍କୁଚିତ ସ୍ପ୍ରିଙ୍ଗ୍‌କୁ କ୍ରମେ କ୍ରମେ ପ୍ରସାରିତ ହୋଇ ଭିତରର ଚକ-ମାନଙ୍କୁ ଚାଳିତ କରେ । ଚକ ବୁଲିଲେ ତା ସାଙ୍ଗେ ସାଙ୍ଗେ କଣ୍ଟା ଦୁଇଟା ମଧ୍ୟ ବୁଲେ ।

ଏ ଯୁଗରେ ନାନାପ୍ରକାର ଘଡ଼ି ଉଦ୍ଭାବିତ ହୋଇଅଛି । ଇଉରୋପର ସୁଇଟ୍‌ଜରଲାଣ୍ଡ ଦେଶର ଲୋକେ ଉତ୍କୃଷ୍ଟ ଘଡ଼ି ନିର୍ମାଣରେ ଦକ୍ଷ । ସେହି ସବୁ ଘଡ଼ି ଦେଖିଲେ ମନୁଷ୍ୟର ବୁଦ୍ଧି କ୍ରମେ କିପରି ବିକଶିତ ହୋଇଅଛି, ତାହା ସ୍ପଷ୍ଟ ଜଣାପଡ଼େ ।

## ପ୍ରଶ୍ନ

୧ । ଘଡ଼ି ଉଦ୍ଭାବିତ ହେବା ପୂର୍ବେ ଲୋକେ କିପରି ବେଳ ଜାଣୁଥିଲେ ?

୨ । ଗାଲିଲିଓ କିଏ ? ସେ ଅଜ କେଉଁ ଯନ୍ତ୍ର ଉଦ୍ଭାବନ କରିଥିଲେ ?

୩ । ଘଣ୍ଟା ଭଣ୍ଡା ଓ ମିନଟ୍ ଭଣ୍ଡାର - ଗଡରେ ପ୍ରଭେଦ-
ବର୍ଣ୍ଣନ ?

---

# ଭୁବନେଶ୍ବର

## ଭ୍ରମଣ କାହାଣୀ ( ୧ )

ମୋ ବାପା ଜଗଦଲପୁର ସ୍କୁଲରେ ଶିକ୍ଷକ କାମ କରନ୍ତି । ମୁଁ ଆମ ସମ୍ବଲପୁର ଜିଲାର ଗୋଟିଏ ମାଇନର ସ୍କୁଲରେ ପଢ଼ୁଥାଏଁ । ବାପା ଦୁଇବର୍ଷ ଗ୍ରାମକୁ ଆସି ନ ଥିଲେ । ଗଲବର୍ଷ ଗ୍ରୀଷ୍ମମାସ ବଡ଼ଦିନ ଛୁଟିରେ ନସ ଦୁଇମାସ ଛୁଟି ନେଇ ଗ୍ରାମକୁ ଆସିଲେ । ମୁଁ ସେ ବର୍ଷ ପ୍ରଥମ ହୋଇ ସପ୍ତମ ଶ୍ରେଣୀକୁ ଉଠିଥାଏ । ବାପା ଗାଆଁକୁ ଆସି ଏ କଥା ଶୁଣି ଭାରି ଖୁସି ହେଲେ । ଆଠ ଦଶ ଦିନ ଗ୍ରାମରେ ରହିବା ପରେ ବାପା ପୁରୀ ଯିବା ପାଇଁ ପ୍ରସ୍ତାବ କଲେ । ମୁଁ ଓ ମୋ ମା ତାଙ୍କ ସଙ୍ଗରେ ଯିବାକୁ ପ୍ରଥମେ ବାହାର ହୋଇଥିଲୁ; ପରେ ଆମ ଗାଆଁରୁ ଆଉ ଗୁରୁ ଜଣ ଲୋକ ଓ ଆମ ସ୍କୁଲର ପ୍ରଧାନ ଶିକ୍ଷକ ଏବଂ ତିନି ଜଣ ଆମ ଶ୍ରେଣୀର ପିଲା ସାଙ୍ଗରେ ବାହାରିଲେ । ମୋଟର ବସ୍‌ରେ ଅନୁଗୋଳଯାଏ ଆସି ସେଠାରୁ ରେଲଗାଡ଼ିରେ ଯାଇ ପ୍ରଥମେ ଭୁବନେଶ୍ବରରେ ପହଞ୍ଚିଲୁ । ମୋ ବାପା ଓ ମାଷ୍ଟରଙ୍କ ଛଡ଼ା ଆମ ଭିତରୁ ଆଉ କେହି କେବେ ପୁରୀ ଜିଲାର କୌଣସି ସ୍ଥାନ ଦେଖି ନ ଥିଲେ । ସେଦିନ ସ୍ଟେସନ ଧର୍ମଶାଳାରେ ରହିଲୁଁ; କିଛି ଦେଖି ପାରିଲୁଁ ନାହିଁ ।

ସକାଳେ ଉଠିବା ପରେ ପ୍ରଥମେ,ଆଖିରେ ପଡ଼ିଲା–ବିନ୍ଦୁସାଗର ପୋଖରୀ । ଓଃ ! କେଡ଼େ ବଡ଼ ସେ ପୋଖରୀ । ମୁଁ କେବେ ଏଡ଼େ ବଡ଼ ପଥର ପାହାଚ ବନ୍ଧା ପୋଖରୀ ଦେଖି ନ ଥିଲି । ସେ ପୋଖରୀରେ ସ୍ନାନ କରିସାରି ଆମେ ଲିଙ୍ଗରାଜଙ୍କ ଦେଉଳକୁ ଗଲୁଁ । ଠାକୁରଙ୍କୁ ଦର୍ଶନ କରିସାରି ଯେତେବେଳେ ମନ୍ଦିର ବେଢ଼ାରେ ବୁଲିଲୁଁ ସେତେବେଳେ ଆମ ଆଖି ସ୍ଥିର ହୋଇଗଲା । କେଡ଼େ ଉଚ୍ଚ ସେ ଦେଉଳ । ପଥରରେ କେତେ ସୂକ୍ଷ୍ମ କାମ ସମୁଦାୟ ମନ୍ଦିର ଦେହରେ ଖଞ୍ଜା ହୋଇଅଛି । ବେଢ଼ା ଭିତରେ ପାର୍ବତୀଙ୍କ ମନ୍ଦିରର କାମ ଅତ୍ୟନ୍ତ ସୂକ୍ଷ୍ମ ଓ ଅତ୍ୟନ୍ତ ସୁନ୍ଦର । ପ୍ରାୟ ୬୦ ଗୋଟି ମନ୍ଦିର ବେଢ଼ା ଭିତରେ ଦେଖିଲି । ବଡ଼ ମନ୍ଦିରଟି ବେଶି ସୁନ୍ଦର । ସେଥିରେ ଜୀବଜନ୍ତୁଙ୍କ ଚିତ୍ର, ଲତା, ପତ୍ର, ଫୁଲ, ଫଳର ଚିତ୍ର, ସୈନ୍ୟ, ଶିକ୍ଷକ, ଛାତ୍ର, ଋଷି, ନର୍ତ୍ତକୀ ପ୍ରଭୃତିଙ୍କ ଚିତ୍ର ଦେଖି ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁଁ ।

ଏ ସବୁ ଦେଖିସାରିବା ପରେ ବାପା କହିଲେ,—"ପୂର୍ବ-କାଳରେ ଏ ଦେଶରେ କେଶରୀବଂଶର ରାଜାମାନେ ରାଜତ୍ୱ କରୁ-ଥିଲେ । ସେ ବଂଶର ରାଜା ଯଯାତି କେଶରୀ ଏ ମନ୍ଦିରର କାମ ଆରମ୍ଭ କରି ମରିଗଲେ । ତା ପରେ ଲଲାଟେନ୍ଦୁ କେଶରୀ ନାମରେ ଆଉ ଜଣେ ରାଜା ମନ୍ଦିରରେ କାମ ୬୫୭ ଖ୍ରୀଷ୍ଟାବ୍ଦରେ ଶେଷ କରିଥିଲେ । ଭୁବନେଶ୍ୱର ସେତେବେଳେ ଓଡ଼ିଶାରେ ପ୍ରଧାନ ଧର୍ମକ୍ଷେତ୍ର ଥିଲା । ତେଣୁ ସେ ବଂଶର ପରବର୍ତ୍ତୀ ରାଜାମାନେ ଏଠାରେ ଅନେକ ମନ୍ଦିର ତୋଳାଇଥିଲେ । ଗଲା ତେରଶହ ବର୍ଷ ମଧ୍ୟରେ ସେଥିରୁ ଅନେକ ମନ୍ଦିର ଭାଙ୍ଗିଯାଇ ମାଟିରେ ମିଶିଗଲାଣି । ବର୍ତ୍ତମାନ ମଧ୍ୟ ଏଠାରେ ଶହ ଶହ ପୁରୁଣା ମନ୍ଦିର ନାନା ଶିଳ୍ପକଳାରେ ପୂର୍ଣ୍ଣ

ହୋଇ ରହିଅଛି । ଉପରବେଳା ଥଜ ଲୋକେ ମନ୍ଦିର ଆମ୍ଭମାନଙ୍କୁ ଦେଖାଇଦେଲା । ସେହି ବଡ଼ ମନ୍ଦିରର ଉଚ୍ଚତା ୧୬୦



ଫୁଟ ଏବଂ ଏହି ଘେରାର କ୍ଷେତ୍ରଫଳ ୪ ½ ଏକର । ଭୁବନେଶ୍ୱର ସେକାଳରେ ଓଡ଼ିଶାର ରାଜଧାନୀ ଥିଲା ।" ତାପରେ ଉପରବେଳା ଆମେ ମୁକ୍ତେଶ୍ୱର, କେଦାରେଶ୍ୱର, ଅନନ୍ତ ବାସୁଦେବ, ସିଦ୍ଧେଶ୍ୱର, ରାମେଶ୍ୱର, ପ୍ରଭୃତି ଅନେକ ମନ୍ଦିର ଦେଖିଲୁଁ । ମୁକ୍ତେଶ୍ୱରଙ୍କ ମନ୍ଦିର ଶିଳ୍ପଗୁଡ଼ିକ ଆମ ଆଖିରେ ବଡ଼ ସୁନ୍ଦର ଦେଖାଗଲା ।

ପରଦିନ ସକାଳେ ଆମ୍ଭେମାନେ ସମସ୍ତେ ସେଠାରୁ ପ୍ରାୟ ଦୁଇମାଇଲ ପଶ୍ଚିମରେ ଥିବା ଖଣ୍ଡଗିରି ପର୍ବତର ଗୁମ୍ଫା ଦେଖିବାକୁ ଯାଇଥିଲୁଁ । ପର୍ବତଟି ବେଶୀ ଉଚ୍ଚ ନୁହେଁ । ଏଥିରେ ଦୁଇଗୋଟି ବଡ଼ ଶୃଙ୍ଗ ଦେଖାଯାଏ, ଗୋଟିକର ନାମ ଖଣ୍ଡଗିରି ଓ ଅନ୍ୟଟିର ନାମ ଉଦୟଗିରି । ସ୍ଥାନଟି ଅରଣ୍ୟ ବେଷ୍ଟିତ ଓ ନିର୍ଜନ । ପାହାଡ଼ର ଗୁରଅଡ଼େ ଶୋଭା ବଡ଼ ମନୋହର । ଏଠାରେ ଦେଖିଲୁଁ ପାହାଡ଼ କଟାହୋଇ ଅନେକ ସୁନ୍ଦର ସୁନ୍ଦର ଗୁମ୍ଫା ତିଆରି ହୋଇଅଛି । ଦୁଇ ପାହାଡ଼ରେ ପ୍ରାୟ ୭୦ ଗୋଟି ଗୁମ୍ଫା ଆମେ ଦେଖିଲୁଁ । ବାପା କହିଲେ—"କେଶରୀବଂଶୀୟ ରାଜାଙ୍କ ରାଜତ୍ୱ ପୂର୍ବରୁ ଏ ଦେଶରେ ଐର ଏବଂ ଖାରବେଲ ନାମରେ ଦୁଇ ଜଣ ରାଜା ରାଜତ୍ୱ କରିଥିଲେ । ଏହି ଗୁମ୍ଫାମାନଙ୍କ ମଧ୍ୟରୁ ଅଧିକାଂଶ ତାଙ୍କ ସମୟରେ ଖୋଳା ହୋଇଥିଲା । ସନ୍ନ୍ୟାସୀମାନେ ଏହି ନିର୍ଜନ ପ୍ରଦେଶରେ ଗୁମ୍ଫାମାନଙ୍କରେ ରହି ଧ୍ୟାନ ଓ ଈଶ୍ୱର ଉପାସନା କରୁଥିଲେ । ଏଠାରେ ରାଣୀହଂସପୁର ନାମକ ଯେଉଁ ବଡ଼ ସୁନ୍ଦର ଗୁମ୍ଫା ଅଛି ନିଜେ ରାଜା ଖାରବେଳ କେବେ କେବେ ସସ୍ତ୍ରୀକ ସେଠାରେ ବାସ କରି ଧର୍ମଚର୍ଚ୍ଚା କରୁଥିଲେ । ପର୍ବତ ଉପରେ ଗୋଟିଏ ଜୈନ୍ୟମନ୍ଦିର ଅଛି । ଜୈନ୍ୟ ସନ୍ନ୍ୟାସୀମାନେ ମଧ୍ୟ ଏ ଗୁମ୍ଫାରେ ତପସ୍ୟା କରୁଥିଲେ । ପରବର୍ତ୍ତୀକାଳରେ କେଶରୀ ରାଜାମାନେ ମଧ୍ୟ ଏଠାରେ କେତେକ ଗୁମ୍ଫା ଖୋଳାଇଥିଲେ ।"

ଏହି ସବୁ ଦେଖିସାରି ସେଦିନ ଭୁବନେଶ୍ୱର ଫେରି ଆସିଲୁଁ ଏବଂ ରାତିରେ ଭୁବନେଶ୍ୱର ଛାଡ଼ି ଚିଲିକା ଦେଖିବାକୁ ବାହାରିଲୁଁ ।

ପ୍ରଶ୍ନ

୧ । ଭୁବନେଶ୍ୱରର ମନ୍ଦିରମାନଙ୍କର ସୂକ୍ଷ୍ମକାମ ଦେଖିଲେ ସେ ସମୟରେ ଓଡ଼ିଶାର ଅବସ୍ଥା କପରି ଥିଲା ବୋଲି ଜଣାଯାଏ ?

୨ । କେଶରୀବଂଶ ପୂର୍ବରୁ ଏ ଦେଶରେ କେଉଁ ରାଜା ରାଜତ୍ୱ କରୁଥିଲେ ? ତାଙ୍କର କ'ଣ କୀର୍ତ୍ତି ଓଡ଼ିଶାରେ ଅଛି ?

୩ । କେଶରୀ ରାଜାମାନଙ୍କର ଆଜ କେଉଁ କେଉଁ କୀର୍ତ୍ତି ଓଡ଼ିଶାରେ ଅଛି ?

---

# ପୁରୁଷୋତ୍ତମ ଦେବ

## ଭ୍ରମଣ କାହାଣୀ ( ୧ )

ଭୁବନେଶ୍ୱରରୁ ଯେଉଁ ଗାଡ଼ିରେ ବାହାରିଲୁଁ ଖୋର୍ଦ୍ଧାରୋଡ଼ ଷ୍ଟେସନରେ ସେ ଗାଡ଼ିରୁ ଓହ୍ଲାଇ ଦକ୍ଷିଣ ଗାଡ଼ିରେ ବସିଲୁଁ । ପ୍ରାୟ ଦଶ ଦଣ୍ଟା ବେଳେ ଆମେ ଚିଲିକା କୂଳ ବାଲୁଗାଁ ଷ୍ଟେସନରେ ଗାଡ଼ିରୁ ଓହ୍ଲାଇଲୁଁ । ଆମ ମାଷ୍ଟରଙ୍କର ଜଣେ ସାଙ୍ଗ ସେଠାରେ ଥିଲେ । ବାଲୁଗାଁରେ ସମସ୍ତେ ତାଙ୍କର ବସାରେ ରହିଲୁଁ । ଠିକ ଚିଲିକାକୂଳରେ ବାଲୁଗାଁ ଷ୍ଟେସନ । ଯେତେବେଳେ ଚିଲିକା ଆମ ଆଖିରେ ପଡ଼ିଲା, ସେତେବେଳେ ମନେ ହେଲା, ସତେ ଯେପରି ଚିଲିକା ଆମ ଓଡ଼ିଶାର ସ୍ୱର୍ଗପୁରୀ । ଚିଲିକା ସମୁଦ୍ର ନୁହେଁ; ଗୋଟିଏ ହ୍ରଦ, ଏହାର ପଶ୍ଚିମ କୂଳରେ ବେଢ଼େ ବଡ଼ ବଡ଼ ପର୍ବତ ଠିଆ ହୋଇଅଛି । ଚିଲିକା ଭିତରେ ବ ପାହାଡ଼ ବାଲିକୁଦ ଓ ନଳବନ । ନାନାଜାତି ଲକ୍ଷ ଲକ୍ଷ ପକ୍ଷୀ ଚିଲିକାରେ ପହଁରୁଥାନ୍ତି । କେତେ ଡଙ୍ଗା ଚିଲିକାରେ ଗ୍ଭଲୁଥାଏ ।

ସେଦିନ ସନ୍ଧ୍ୟାବେଳେ ପ୍ରାୟ ଦଶ ଘଣ୍ଟା ଆମେ ସମସ୍ତେ ଚିଲିକା-କୂଳରେ ବସି ଯେଉଁ ଶୋଭା ଓ ଆନନ୍ଦ ଭୋଗ କରିଥିଲୁଁ ସେବିଷୟ ଚିରଦିନ ମନରୁ ପାସୋରି ହୋଇ ଯିବ ନାହିଁ ।

ଆରଦିନ ସନ୍ଧ୍ୟାରେ ଡଙ୍ଗାରେ ବସି ଆମେ ପୁଣି ବାହାରିଲୁଁ । ଚନ୍ଦ୍ରପକ୍ଷ ରାତି । ନାଉରିମାନେ ଡଙ୍ଗାରେ ପାଲ ବାନ୍ଧି ଡଙ୍ଗା ଛାଡ଼ିଦେଲେ । ଆମେ ସମସ୍ତେ ଡଙ୍ଗାରେ ଶୋଇଲୁଁ । ସକାଳେ ଚିଲିକାକୂଳରେ ଗୋଟିଏ ଗାଁ ପାଖରେ ଡଙ୍ଗା ଲାଗିଲା । ସମସ୍ତେ ସେଠାରେ ଓହ୍ଲାଇଲୁଁ । ମାଷ୍ଟର ମହାଶୟଙ୍କ ପ୍ରସ୍ତାବରେ ସେଦିନ ସମସ୍ତେ ସେଠାରେ ରହିଲୁଁ । ସେ ଗ୍ରାମର ନାମ ମାଣିକ ପାଟଣା । ନିକଟରେ ଗୋଟିଏ ପ୍ରକାଣ୍ଡ ପଡ଼ିଆ । ଚିଲିକା ମାଛ ଓ ମାଣିକପାଟଣା ଦହି କଥା ଆଜିଯାଏ ମୋ ମନରେ ଅଛି । ଦିପହରବେଳା ଚିଲିକାକୂଳକୁ ବୁଲିବାକୁ ଗଲୁଁ । ଏହି ଅବସରରେ ମାଷ୍ଟର ମହାଶୟ କହିଲେ,—ଏହି ମାଣିକପାଟଣା ଆମ ଓଡ଼ିଶା ଇତିହାସରେ ଗୋଟିଏ ସ୍ମରଣୀୟ ସ୍ଥାନ । ମହାରାଜା ପୁରୁଷୋତ୍ତମ ଦେବ ସୂର୍ଯ୍ୟବଂଶର ଜଣେ ପ୍ରସିଦ୍ଧ ରାଜା । ସେ ୧୪୭୯ରୁ ୧୪୯୭ ଖ୍ରୀଷ୍ଟାବ୍ଦ ଯାଏ ଏ ଦେଶରେ ରାଜତ୍ୱ କରୁଥିଲେ । ତାଙ୍କ ପିତାଙ୍କ ନାମ କପିଳେନ୍ଦ୍ର ଦେବ । କପିଳେନ୍ଦ୍ର ଦାକ୍ଷିଣାତ୍ୟର ଅନେକ ଅଞ୍ଚଳ ଜୟ କରି ଓଡ଼ିଶା ସଙ୍ଗେ ମିଶାଇଥିଲେ । କପିଳେନ୍ଦ୍ର ଦାକ୍ଷିଣାତ୍ୟରେ ଯୁଦ୍ଧ କଲାବେଳେ ଯୁବରାଜ ପୁରୁଷୋତ୍ତମ ଦେବଙ୍କୁ ସାଙ୍ଗରେ ନେଇ ଯାଇଥିଲେ । ଦକ୍ଷିଣରେ କାବେରୀ ନଦୀକୂଳରେ କାଞ୍ଚି ବା କଞ୍ଜିଭେଲମ ନାମରେ ଗୋଟିଏ ରାଜ୍ୟ ଥିଲା । ସେ ଦେଶ ରାଜାଙ୍କର ପଦ୍ମାବତୀ ନାମରେ ଗୋଟିଏ ପରମ ସୁନ୍ଦରୀ ଓ ଗୁଣବତୀ କନ୍ୟା ଥିଲେ । ପୁରୁଷୋତ୍ତମ ଦେବଙ୍କର ରୂପ ଓ ଗୁଣରେ ମୁଗ୍ଧ

ହୋଇ ତାହିଁର ରାଜା ତାଙ୍କ ସଙ୍ଗେ ପଦ୍ମାବତୀଙ୍କ ବିବାହ ଦେବାପାଇଁ ସ୍ଥିର କରିଥିଲେ । ପରେ ଶୁଣିଲେ ଯେ, ଜଗନ୍ନାଥଙ୍କ ରଥଯାତ୍ରା-ବେଳେ ଉତ୍କଳର ରାଜାଙ୍କୁ ଛେରାପହଁରା କାର୍ଯ୍ୟ କରିବାକୁ ହୁଏ । ସାଧାରଣତଃ ଚଣ୍ଡାଳମାନେ ଛେରାପହଁରା ବା ଝାଡୁମାରି ସଫା କରିବା କାମ କରନ୍ତି । ଏହା ଶୁଣି କାଞ୍ଚିରାଜା ଘୃଣା କଲେ ଓ ପଦ୍ମାବତୀଙ୍କୁ ପୁରୁଷୋତ୍ତମଙ୍କ ସଙ୍ଗେ ବିବାହ ଦେବାକୁ ରାଜି ହେଲେ ନାହିଁ । ପୁରୁଷୋତ୍ତମ କାହିଁକୁ ଦୂତ ପଠାଇ ସମସ୍ତ କଥା ରାଜାଙ୍କୁ ବୁଝାଇ ଦେଲେ । ତଥିରେ ରାଜା ଶାନ୍ତ ନ ହୋଇ ବରଂ ରାଗରେ ସେ ଦୂତକୁ ବନ୍ଦୀ କରି ରଖିଲେ । ତେଣୁ ପୁରୁଷୋତ୍ତମ ବାଧ୍ୟ ହୋଇ କାଞ୍ଚି ଆକ୍ରମଣ କରିବାକୁ ଯୁଦ୍ଧଯାତ୍ରା କଲେ । ମାତ୍ର ପ୍ରଥମ ଥର ଯୁଦ୍ଧରେ ପରାସ୍ତ ହୋଇ ଫେରି ଆସିଲେ । ସେ ନିଜ ଇଷ୍ଟଦେବତା ଜଗନ୍ନାଥଙ୍କ କୃପାଭିକ୍ଷା କରି ପରବର୍ଷ ଅଧିକ ସଶୋଭ ସୈନ୍ୟ ନେଇ ପୁଣି କାଞ୍ଚି ଅଭିଯାନରେ ବାହାରିଲେ । କଥିତ ଅଛି, ଜଗନ୍ନାଥ ଓ ବଳଭଦ୍ର ଉଭୟ ପୁରୁଷୋତ୍ତମଙ୍କୁ ଯୁଦ୍ଧରେ ସାହାଯ୍ୟ କରିବାପାଇଁ ଘୋଡ଼ାରେ ଚଢ଼ି ରାଜାଙ୍କ ଆଗେ ଆଗେ ଯାତ୍ରା କରିଥିଲେ ଏବଂ ଏହି ସ୍ଥାନରେ ମାଣିକା ନାମକ ଗଉଡୁଣୀଠାରୁ ଦହି ଖାଇ ଅଙ୍ଗୁଠିର ରତ୍ନମୁଦି ବନ୍ଧା ଦେଇ କହିଲେ ଯେ, ପଛରେ ଆସୁଛନ୍ତି ରାଜା ପୁରୁଷୋତ୍ତମ, ତାଙ୍କୁ ଏହି ମୁଦି ଦେଖାଇଲେ ସେ ତୋତେ ଦହି ଦୁଧର ମୂଲ୍ୟ ଦେବେ ।' ଏହା କହି ସେ ଦୁହେଁ ଚାଲିଗଲେ । ପରେ ରାଜା ପୁରୁଷୋତ୍ତମ ଏଠାରେ ପହଞ୍ଚିବାରୁ ମାଣିକା ମୁଦି ଦେଖାଇ ତା ମୂଲ୍ୟ ମାଗିଲା । ରାଜା ସେ ମୁଦି ଦେଖି ଜାଣିପାରିଲେ ଯେ ତାହା ଜଗନ୍ନାଥଙ୍କ ମୁଦି । ତେଣୁ ସେ ଖୁବ ଖୁସି ହୋଇ ଗଉଡୁଣୀକୁ ବହୁ ଧନ ଦେଲେ ଓ ତା ନାମରେ ଏହି ମାଣିକପାଟଣା ଗାଁ ଏଠାରେ ବସାଇଲେ ।

ଏକଥା ଶୁଣି ଆମ ମନରେ ଭାରି ଆନନ୍ଦ ହେଲା । ତା ପରେ ମୋ ମାଆ ମାଷ୍ଟରଙ୍କୁ ପଚାରିଲେ, ପରେ ସେ ପଦ୍ମାବତୀ କାହାକୁ ବାହା ହେଲେ ? ମାଷ୍ଟର ମହାଶୟ ପୁଣି କହିଲେ,—ଏଥର ରାଜା ଯୁଦ୍ଧରେ ଜିଣିଲେ ଓ ତାଙ୍କ ରାଜ୍ୟ ଦଖଲ କରି ପଦ୍ମାବତୀ ଓ ତାଙ୍କ ବାପାଙ୍କୁ ବନ୍ଦୀ କରି ସାଙ୍ଗରେ ନେଇ ଆସିଲେ । ପୁରୁଷୋତ୍ତମ ପ୍ରତିଜ୍ଞା କଲେ; ମୁଁ ଜଗନ୍ନାଥଙ୍କ ରଥରେ ଚଣ୍ଡାଳ କାର୍ଯ୍ୟ କରୁଥିବାରୁ ଯେତେବେଳେ ତାଙ୍କ ବାପା ମୋ ସଙ୍ଗେ ପଦ୍ମାବତୀଙ୍କୁ ବିବାହ କରିବାକୁ ଘୃଣା କଲେ, ସେତେବେଳେ ମୁଁ ତାଙ୍କ ଝିଅକୁ ଜଣେ ଚଣ୍ଡାଳ ଅର୍ଥାତ୍ ହାଡ଼ି ସଙ୍ଗରେ ବିବାହ ଦେବି ।' ଏହାପରେ ଆଦେଶ ଦେଇ ପଦ୍ମାବତୀଙ୍କୁ ସେ କଟକ ବାରବାଟୀ ଦୁର୍ଗରେ ବନ୍ଦୀ କରି ରଖାଇଲେ ପରବର୍ଷ ରାଜା ଯେତେବେଳେ ଛେରା ପହଁରା କରୁଥିଲେ ସେତେବେଳେ ବୁଦ୍ଧିମାନ୍ ମନ୍ତ୍ରୀ ପଦ୍ମାବତୀଙ୍କୁ ସାଙ୍ଗରେ ନେଇ ରାଜାଙ୍କୁ କହିଲେ ଜଣେ ଚଣ୍ଡାଳ ସଙ୍ଗେ ପଦ୍ମାବତୀଙ୍କୁ ବିବାହ ଦେବା ପାଇଁ ଆପଣଙ୍କ ଆଦେଶ ହୋଇଥିଲା, ବର୍ତ୍ତମାନ ଆପଣ ଚଣ୍ଡାଳ କାମ କରୁଅଛନ୍ତି, ତେଣୁ ମୁଁ ଆପଣଙ୍କ ହାତରେ ପଦ୍ମାବତୀଙ୍କୁ ଅର୍ପଣ କଲି । ରାଜା ଏ କଥା ଶୁଣି ଭାରି ଖୁସି ହେଲେ । ପଦ୍ମାବତୀଙ୍କ ସଙ୍ଗେ ତାଙ୍କର ବିବାହ ହେଲା । ପରେ ସେ ତାଙ୍କ ବାପାଙ୍କୁ ବନ୍ଧନରୁ ମୁକ୍ତ କରି ଦେଲେ ।

ଏ ଗପ ଶୁଣି ସମସ୍ତେ ଭାରି ଖୁସି ହେଲୁ । ଅରଦିନ ପାଣିଉପାଟଣାରୁ ବାହାରି ଆମେ ସନ୍ଧ୍ୟାବେଳକୁ ପୁରୀରେ ପହଞ୍ଚି ଗଲୁ । ସେଦିନ ଦେବଳ ଜଗନ୍ନାଥଙ୍କୁ ଦର୍ଶନ କରି ଘରରେ ବସାରେ ଯାଇ ଶୋଇଲୁଁ ।

### ପ୍ରଶ୍ନ

୧ । ପ୍ରାଚୀନ କାଳରେ ଓଡ଼ିଶାର ସୀମା କେଉଁଠାରୁ କେଉଁଯାଏ ବିସ୍ତୃତ ଥିଲା ? ଏବେ ଓଡ଼ିଶା ବାହାରେ ଆଉ କେଉଁ ଅଞ୍ଚଳରେ ବେଶି ଓଡ଼ିଆ ଅଛନ୍ତି ?

୨ । କିପରି ଭାବରେ ଚିଲିକା ହ୍ରଦର କ୍ଷୟ ହୋଇଅଛି ? ଚିଲିକା ପାଣି ଲୁଣିଆ କାହିଁକି ?

୩ । ଚିଲିକା ହ୍ରଦର ପ୍ରାକୃତିକ ଶୋଭା ନିଜ ଭାଷାରେ ବର୍ଣ୍ଣନ କର ।



## ଅନଙ୍ଗଭୀମ ଦେବ

### ଭ୍ରମଣ କାହାଣୀ ( ୩ )

ସକାଳେ ସମସ୍ତେ ନରେନ୍ଦ୍ର ପୋଖରୀରେ ସ୍ନାନ କରି ବଡ଼ ମନ୍ଦିର, ଗୁଣ୍ଡିଚା ମନ୍ଦିର, ସମୁଦ୍ର ଓ ଅନ୍ୟର ଅନେକ ସ୍ଥାନ ଦେଖିଲେ । ଭୁବନେଶ୍ୱର ମନ୍ଦିର ପରି ଏଥିରେ ବେଶୀ ଶିଳ୍ପକାର୍ଯ୍ୟ ନ ଥିଲେହେଁ ଏହା ସେହିପରି ବଡ଼ ଓ ଭାରି ସୁନ୍ଦର । ବେଢ଼ା ମଧ୍ୟରେ ଅନେକ ଦେବଦେବୀଙ୍କ ମନ୍ଦିର ମଧ୍ୟ ଅଛି । ସେଦିନ ଅପରାହ୍ନରେ ସମସ୍ତେ ପୁଣି ମନ୍ଦିର ମଧ୍ୟକୁ ଆସିଲେ । ସମସ୍ତଙ୍କୁ ଏକ ସ୍ଥାନରେ ବସାଇ ବାପା କହିଲେ :—

"ଏହି ପୁରୀ ବା ଜଗନ୍ନାଥଧାମ ଭାରତରେ ହିନ୍ଦୁମାନଙ୍କର ସର୍ବପ୍ରଧାନ ତୀର୍ଥ । ଆମ ହିନ୍ଦୁ ଶାସ୍ତ୍ରମାନଙ୍କରେ ଲେଖା ଅଛି ଯେ ଏ କଳିଯୁଗରେ ଭଗବାନ୍ ଦାରୁବ୍ରହ୍ମରୂପ ଧାରଣ କରି ଏହି

ସ୍ଥାନରେ ବିସ୍ତରିତ ଅଛନ୍ତି । ତେଣୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଯାତ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ପୁରୀକୁ ଆସନ୍ତି । ଏହି ମନ୍ଦିର ନୀଳପର୍ବତ ନାମରେ ହିନ୍ଦୁ ପୁରାଣମାନଙ୍କରେ ପରିଚିତ । ଅତି ପ୍ରାଚୀନକାଳରେ ଇନ୍ଦ୍ରଦ୍ୟୁମ୍ନ ନାମରେ ଜଣେ ରାଜା ସମୁଦ୍ର-କୂଳରେ ଏହି ରମଣୀୟ ସ୍ଥାନରେ ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କରାଇଥିଲେ । କାଳକ୍ରମେ ସେ ମନ୍ଦିର ଭାଙ୍ଗି ପଡ଼ିବାରୁ ଯଯାତିକେଶରୀ ଆଉ ଗୋଟିଏ ମନ୍ଦିର ନିର୍ମାଣ କରାଇ ଜଗନ୍ନାଥଙ୍କ ସେବାପୂଜାର ସୁବନ୍ଦୋବସ୍ତ କରିଥିଲେ । ଯେ‌ତିଙ୍କ ପରେ ଗଙ୍ଗବଂଶୀୟ ରାଜା ଚୋଡ଼ଗଙ୍ଗଦେବ ଏଠାରେ ଆଉ ଗୋଟିଏ ମନ୍ଦିର ଗଢ଼ିବାପାଇଁ କାମ ଆରମ୍ଭ କରିଥିଲେ । ମାତ୍ର କାର୍ଯ୍ୟ ଶେଷ ହେବା ପୂର୍ବରୁ ସେ ମରିଗଲେ । ତତ୍ପରେ ତାଙ୍କ ବଂଶର ଅନ୍ୟତମ ପ୍ରସିଦ୍ଧ ରାଜା ଅନଙ୍ଗଭୀମ ଦେବ ଏହି ମନ୍ଦିର ନିର୍ମାଣ କରାଇଥିଲେ । ୧୨୦୫ ଖ୍ରୀଷ୍ଟାବ୍ଦରେ ତାଙ୍କ ରାଜତ୍ୱର ସପ୍ତଦଶବର୍ଷରେ ଏହି ମହା-ମନ୍ଦିରର କାମ ଶେଷ ହେଲା । ହିନ୍ଦୁଧର୍ମରେ ଶୈବ୍ୟ ଶାକ୍ତ, ଗାଣପତ୍ୟ ପ୍ରଭୃତି ଅନେକ ମତ ଅଛି, ମହାରାଜ ଅନଙ୍ଗଭୀମ ନିଜ ବୁଦ୍ଧିବଳରେ ସେ ସମସ୍ତ ଆଲୋଚନା କରି ଏଠାରେ ଏପରି ଭାବରେ ସେବାପୂଜାର ବ୍ୟବସ୍ଥା କରାଇଅଛନ୍ତି ଯେ ପ୍ରତ୍ୟେକ ସମ୍ପ୍ରଦାୟର ଲୋକ ବିନା ଆପତ୍ତିରେ ଜଗନ୍ନାଥ ଦର୍ଶନ କରି ଓ ଜଗନ୍ନାଥଙ୍କ ପ୍ରସାଦ ସେବା କରି କୃତାର୍ଥ ହୁଅନ୍ତି । ଜଗନ୍ନାଥଙ୍କ ପ୍ରସାଦ ଅତି ପବିତ୍ର, ତେଣୁ ଏଠାରେ ଜାତି ବିଚାର ନ କରି ଲୋକେ ଏକତ୍ର ସମସ୍ତେ ମହାପ୍ରସାଦ ଗ୍ରହଣ କରିଥାଆନ୍ତି ।

ଅନଙ୍ଗଭୀମ ଦେବ ଓ ତାଙ୍କର ପରବର୍ତ୍ତୀ ରାଜାମାନେ ଭାରି କଳାଭକ୍ତ ଥିଲେ । ତେଣୁ ଏଠାରେ ସେମାନେ ଅନେକ ମଠ

ପୁଷ୍କରଣୀ ପ୍ରତିଷ୍ଠା କରାଇଥିଲେ । ଏବେ ପୁରୀରେ ବହୁତ ମଠ ଅଛି । ସବୁ ମଠକୁ ପୂର୍ବ ରାଜାମାନେ ବହୁ ଭୂସମ୍ପତ୍ତି ଦାନ କରି ଯାଇଥିଲେ । ଅଳ୍ପଯାଏ ମଧ୍ୟ ମଠ ମହନ୍ତମାନେ ରାଜା ଭଳି ବେଶ ଛାଡ଼ା ଭୋଗ କରୁଅଛନ୍ତି । ଶଙ୍କରାଚାର୍ଯ୍ୟ ଓ ଚୈତନ୍ୟ ପ୍ରଭୃତି ମହାପୁରୁଷମାନେ ଏହି ପବିତ୍ର ସ୍ଥାନରେ ଆପଣା ଆପଣା ଧର୍ମମତ ପ୍ରଚାର କରିବାପାଇଁ ଏଠାକୁ ଆସିଥିଲେ । ସେମାନଙ୍କ ମଠ ମଧ୍ୟ ଏଠାରେ ଅଳ୍ପଯାଏ ରହିଅଛି ।



ଅନଙ୍ଗ ଭୀମ ଭାରି ଦାନୀ ଓ ପ୍ରଜାହିତୈଷୀ ରାଜା ଥିଲେ । ସେ ଅନେକ ମନ୍ଦିର ଓ ପୋଲ ତିଆରି କରିଥିଲେ ଏବଂ ବହୁସଂଖ୍ୟକ ଗାମ୍ଭୀ ଓ ପୋଖରୀ ଖୋଳାଇଥିଲେ । ୪୫୦ ବ୍ରାହ୍ମଣଶାସନ ବସାଇ

ବ୍ରାହ୍ମଣମାନଙ୍କୁ ବହୁ ଭୂସମ୍ପତ୍ତି ଦାନ କରିଥିଲେ । ଅନେକ ସଡ଼କ ତିଆରି କରାଇ ତାହା ଦୁଇ ପାଖରେ ବାଟୋଇମାନଙ୍କ ପାଇଁ ବସାଘର ତୋଳାଇଥିଲେ ଓ ଛାୟାପ୍ରଦ ବୃକ୍ଷମାନ ଲଗାଇଥିଲେ ।

ଅନଙ୍ଗଭୀମ ଦେବ ଯେପରି ଦାତା ଓ ପ୍ରଜାହିତୈଷୀ ଥିଲେ । ସେହିପରି ମଧ୍ୟ ମହାବୀର ଥିଲେ । ସେ ତାଙ୍କ ସୈନ୍ୟସଂଖ୍ୟା ବହୁତ ବଢ଼ାଇଦେଇ ରାଜ୍ୟ ମଧ୍ୟରେ ଅନେକ ଦୁର୍ଗ ନିର୍ମାଣ କରାଇଥିଲେ । କଟକର ପ୍ରସିଦ୍ଧ ବାରବାଟି ଦୁର୍ଗ ଏହି ଅନଙ୍ଗଭୀମ ଦେବଙ୍କ ଅମଳରେ ତିଆରି ହୋଇଥିଲା । ଏହି ଦୁର୍ଗର ଗଡ଼ଖାଇ ଓ ପ୍ରାଚୀରର ଧ୍ୱଂସାବଶେଷ ଆଜିଯାଏ ରହିଅଛି । ପ୍ରାୟ ୯୦ ଏକର ଭୂମି ଉପରେ ଏହି ଦୁର୍ଗ ପ୍ରତିଷ୍ଠିତ ହୋଇଥିଲା । ସେ ପୁରୀ ଛାଡ଼ି କଟକରେ ରାଜଧାନୀ କରି ସେହିଠାରେ ରହୁଥିଲେ । ସେ ତାଙ୍କ ରାଜ୍ୟକୁ ଜରିପ କରାଇ ବନ୍ଦୋବସ୍ତ କରାଇଥିଲେ ।

ପୁରୀରେ ଆମ୍ଭେମାନେ ଚାରିଦିନ ରହିଲୁଁ; ତା ପରେ ବାପାଙ୍କ ବରାଦ ଅନୁସାରେ ସେଠାରୁ କୋଣାର୍କ ଦେଖିବାକୁ ବାହାରିଲୁଁ ।

ପ୍ରଶ୍ନ

୧ । ହିନ୍ଦୁ ଧର୍ମରେ ଚାରିଧାମ କିଏ କିଏ ? ମାନଚିତ୍ରରେ ପ୍ରତ୍ୟେକର ଅବସ୍ଥାନ ନିର୍ଦ୍ଦେଶ କର ।

୨ । ଆମ ଓଡ଼ିଆ ଜାତି ପ୍ରାଚୀନକାଳରେ ବୀରଜାତି ଥିଲେ, ଏହାର ପ୍ରମାଣ କଅଣ ? ଆମ ଭିତରୁ କେଉଁ ଜାତି ଆଗେ ଏ ଦେଶରେ ସୈନ୍ୟବିଭାଗରେ କାର୍ଯ୍ୟ କରୁଥିଲେ ।

୩ । କି ଉଦ୍ଦେଶ୍ୟରେ ପୂର୍ବକାଳର ରାଜାମାନେ ମଠ ଓ ମନ୍ଦିର-ମାନଙ୍କୁ ଏତେ ସମ୍ପତ୍ତି ଦାନ କରିଥିଲେ ?

# କୋଣାର୍କ

## ଭ୍ରମଣ କାହାଣୀ ( ୪ )

କୋଣାର୍କ ପୁରୀର ପୂର୍ବ ଦିଗରେ ପ୍ରାୟ ୨୨ ମାଇଲ ଦୂରରେ ଅବସ୍ଥିତ । ପୁରୀରୁ ସେଠାକୁ ଯିବାପାଇଁ ଭଲ ସଡ଼କ ନାହିଁ । କେବଳ ବାଲିରେ ଯିବାକୁ ହୁଏ । ତେଣୁ ଚାରି ଖଣ୍ଡ ବଳଦଗାଡ଼ି ଭଡ଼ା କରି ଆମ୍ଭେମାନେ ଦିନେ ଉପରବେଳା ସେଠାକୁ ଯାତ୍ରା କଲୁଁ । ବାଟରେ ଗାଆଁ କି ଗଛପତ୍ର କିଛି ନାହିଁ । ମରୁଭୂମିପରି ଚାରିଆଡ଼େ ବାଲି । ବାଟରେ ସମୁଦ୍ର ଗର୍ଜନ ଶୁଣା ଯାଉଥାଏ । ସେଦିନ ରାତିଯାକ ବଳଦଗାଡ଼ି ଧୀରେ ଧୀରେ ଚାଲି ପରଦିନ ସକାଳେ ସେଠାରେ ଆମକୁ ନେଇ ପହଞ୍ଚାଇ ଦେଲା । ଦେଖିଲୁଁ, କୋଣାର୍କରେ ମଧ୍ୟ ଗାଆଁ ନାହିଁ । ଗୋଟାଏ ଝାଉଁବଣ ଭିତରେ ଗୋଟିଏ ପୁରୁଣା ମନ୍ଦିର ଦରଭଙ୍ଗା ଅବସ୍ଥାରେ ଠିଆ ହୋଇଅଛି । ପାଖରେ ଗୋଟିଏ ଛୋଟ ମଠ ଥିଲା । ମଠର ବାବାଜି ଦୟାକରି ଆମ ସମସ୍ତଙ୍କୁ ମଠରେ ସ୍ଥାନ ଦେଲେ । ମୁଁ ମନେ କରୁଥାଏଁ ଏଠାରେ ତ ଠାକୁର ନାହାନ୍ତି କି ସହର ବଜାର ପ୍ରଭୃତି କିଛି ନାହିଁ, ବାପା କାହିଁକି ଏତେ ଟଙ୍କା ଖର୍ଚ୍ଚ କରି ଆମ୍ଭମାନଙ୍କୁ ଏଠାକୁ ଘେନି ଆସିଲେ ? କଅଣ ଏଠାରେ ଦେଖିବା ? ସ୍ନାନ, ଭୋଜନ, ବିଶ୍ରାମ ଶେଷରେ ଆମେ ସମସ୍ତେ ସେହି ପୁରୁଣା ମନ୍ଦିର ଦେଖିବାକୁ ବାହାରିଲୁଁ । ପ୍ରକାଣ୍ଡ ବେଢ଼ା; ଏବେ ଚାରି-ପାଖରେ ଝାଉଁଗଛ ଲାଗିଛି । ଅସଲ ବଡ଼ ଦେଉଳ ଭାଙ୍ଗି ପଡ଼ିଛି । ଅଛି କେବଳ ମୁଖଶାଳା । କୌଣସି ଠାକୁର ବି ସେଠାରେ ନାହାନ୍ତି । ଆମେ ସମସ୍ତେ ଯେତେବେଳେ ମୁଖଶାଳା ପାଖରେ ପହଞ୍ଚି ତାକୁ ଚାହିଁଲୁ ସେତେବେଳେ ଆମ ଆଖିରେ ଆଉ ପଲକ

ପଡ଼ିଲା ନାହିଁ । କେଡ଼େ ସୁନ୍ଦର ସେ ପଥର କାମ ! ମନେ ହେଲା,
ଯତେ ଯେପରି କାରିଗରମାନେ ଛୁଞ୍ଚିରେ ଖୋଳି ସେ ପଥରରେ କାମ
କରିଅଛନ୍ତି । ଆମେ ଭୁବନେଶ୍ୱର ଓ ପୁରୀରେ ଅନେକ ମନ୍ଦିର ଓ
ସୂକ୍ଷ୍ମକାମ ଦେଖିଲୁ, କିନ୍ତୁ ଏପରି କାମ ତ କେଉଁଠାରେ ହେଲେ
ଆମ ଆଖିରେ ପଡ଼ି ନ ଥିଲା । ଘଣ୍ଟାଏ ଦୁଇ ଘଣ୍ଟା ଚାରିଆଡ଼େ



ବୁଲି ଦେଖିଲୁଁ, ପରେ ଦେଉଳ ଚାରିକଡ଼ୁ ଉଠି ଅନେକ ମୂର୍ତ୍ତି
ଓ ଶିଳ୍ପକାମ ଦେଖିଲୁ । ଶେଷରେ ସିଂହଦ୍ୱାର ପାଖରେ ସମସ୍ତେ
ଜୁଣ୍ଡ ହୋଇ ବସିବାରୁ ବାଜା ଆରମ୍ଭ କଲେ —

ଏହା ଆମ ଓଡ଼ିଆ ଜାତିର କୀର୍ତ୍ତି । ଏ ଯୁଗରେ ଅନେକମାନେ ସେପରି ଉନ୍ନତ କରି ପାରିନାହାନ୍ତି, କିନ୍ତୁ ଆଜକୁ ୭୦୦ ବର୍ଷ ପୂର୍ବେ ଆମ ପୂର୍ବପୁରୁଷମାନେ କେପରି ଉନ୍ନତ ଥିଲେ ଏହି କୋଣାର୍କ ମନ୍ଦିର ତାହାର ପ୍ରମାଣ । ଏ ଯୁଗରେ ଅନେକ ବଡ଼ ପଣ୍ଡିତ ଓ ଶିଳ୍ପୀମାନେ ଏହି ମନ୍ଦିର ଦେଖି ବିସ୍ମିତ ହେଉଅଛନ୍ତି । ଯେଉଁ ଅନଙ୍ଗଭୀମ ଦେବଙ୍କ କଥା ପୂର୍ବରୁ କହିଥିଲି, ତାଙ୍କ ପୁଅ ଲାଙ୍ଗୁଳା ନରସିଂହଦେବ ଏହି ବିଶ୍ୱବିଖ୍ୟାତ କୀର୍ତ୍ତି ୧୨୫୦ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରାଇଥିଲେ । କୋଣାର୍କ ହିନ୍ଦୁଧର୍ମ ଶାସ୍ତ୍ରରେ ସୂର୍ଯ୍ୟକ୍ଷେତ୍ର ବୋଲି ପ୍ରସିଦ୍ଧ । ନରସିଂହ ଦେବ ସୂର୍ଯ୍ୟଦେବଙ୍କୁ ପୂଜା କରିବାପାଇଁ ଏଠାରେ ଏ ମନ୍ଦିର ତୋଳାଇଥିଲେ । ସଦାଶିବ ସାମନ୍ତରାୟ ନାମକ ତାଙ୍କର ମନ୍ତ୍ରୀଙ୍କ ଉପରେ ଏହି ମନ୍ଦିର ନିର୍ମାଣ ଭାର ପଡ଼ିଥିଲା । କଥିତ ଅଛି, ପ୍ରତିଦିନ ବାରଶହ ବଢ଼େଇ ୧୨ ବର୍ଷ କାମ କରି ଏହା ଶେଷ କରିଥିଲେ ଏବଂ ସମଗ୍ର ଓଡ଼ିଶା ଦେଶର ବାରବର୍ଷର ରାଜସ୍ୱ ପ୍ରାୟ ୪୦ କୋଟି ଟଙ୍କା ଏହି ମନ୍ଦିର ନିର୍ମାଣରେ ବ୍ୟୟିତ ହୋଇଥିଲା । କେବଳ ଓଡ଼ିଶାରେ ନୁହେଁ, ସମଗ୍ର ଭାରତରେ ଏହି ମନ୍ଦିର ଉଚ୍ଚତା ଏବଂ ଶିଳ୍ପଚାତୁରୀରେ ସର୍ବଶ୍ରେଷ୍ଠ ଥିଲା । ବଡ଼ ଦେଉଳର ଉଚ୍ଚତା ଥିଲା ୨୦୦ ଫୁଟ ଓ ମୁଖଶାଳାର ଉଚ୍ଚତା ଥିଲା ୧୫୦ ଫୁଟ । ବଡ଼ ଦେଉଳ ସମ୍ପୂର୍ଣ୍ଣରୂପେ ଭାଙ୍ଗି ପଡ଼ି ଅଛି ଓ ମୁଖଶାଳାର ଉପରଅଂଶ ଭାଙ୍ଗି ଯାଇଅଛି । ବର୍ତ୍ତମାନ ଯାହା ଦେଖୁଅଛ, ତାହାର ଉଚ୍ଚତା ୧୩୦ ଫୁଟ ମାତ୍ର । ସମଗ୍ର ମନ୍ଦିରଟି ସୂର୍ଯ୍ୟଙ୍କ ରଥ ଆକାରରେ ନିର୍ମିତ ହୋଇଥିଲା । ଉତ୍ତର ଓ ଦକ୍ଷିଣ ପାଖରେ ମନ୍ଦିର ବାଡ଼ ଦେହରେ ପଥର ଅଖ ଲାଗି ୧୪ ଗୋଟି ପ୍ରକାଣ୍ଡ ଚକ ଲାଗିଥିଲା ଓ ସାତଗୋଟି ପ୍ରକାଣ୍ଡ ପଥର ଘୋଡ଼ା ଏଥିରେ ଲାଗିଥିଲେ । ବେଢ଼ା ଓ ମନ୍ଦିରର କେତେକ

ଅଂଶ ବାଲିରେ ପୋତି ହୋଇ ପଡ଼ିଥିଲା, ଏବେ ସେ ସବୁ ଖୋଳା ହୋଇ ବାହାରୁଅଛି ।

କେବଳ ଆକୃତିରେ ନୁହେଁ, ଶିଳ୍ପ ଓ ସୂକ୍ଷ୍ମ କାରୁକାର୍ଯ୍ୟ ପାଇଁ କୋଣାର୍କ ପୃଥିବୀରେ ବିଖ୍ୟାତ । ତୁମ୍ଭେମାନେ ଘୂରିଆଜି ବୁଲି ଅନେକ କଥା ଦେଖିଅଛ, ମନ୍ଦିରର ସିଂହଦ୍ୱାର ଚଉକାଠରେ ଏହି ଯେଉଁ ମସୃଣ ପଥର କାମ ହୋଇଅଛି, ତାକୁ ଟିକିଏ ମନ ଦେଇ ଦେଖ; କେଡ଼େ ସୁନ୍ଦର, କେଡ଼େ ବୁଦ୍ଧିମତ୍ତାରେ ଓଡ଼ିଆ କାରିଗରମାନେ ଏହି ପଥରରେ ଲତା, ଫଳ, ଫୁଲ, ନାଗ, ପଦ୍ମ, ଅପ୍ସରାମାନଙ୍କର ଚିତ୍ର ଖୋଳିଅଛନ୍ତି । ଏହାର ପ୍ରତ୍ୟେକ ଚିତ୍ରକୁ ବର୍ଣ୍ଣନା କଲେ ଗୋଟିଏ ପ୍ରକାଣ୍ଡ ବହି ହେବ ।“

ବାପା ଏହା କହିବା ପରେ ମାଷ୍ଟର ମହାଶୟ କହିଲେ, ଏହି ମନ୍ଦିର ନିର୍ମାଣ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଆଜି ଯାଏ ଏ ଅଞ୍ଚଳରେ ଚଳୁଅଛି । ୧୨ବର୍ଷ ପରିଶ୍ରମ କରି ବାରଶହ ବଢ଼େଇ ଏ ମନ୍ଦିର ନିର୍ମାଣ କଲେ, ମାତ୍ର ମୂଳଦୁଆ ଦେଲାବେଳେ ଟିକିଏ ଦୋଷ ରହିଯାଇଥିବାରୁ ମନ୍ଦିରର ମୁଣ୍ଡି ମାରି ପାରିଲେ ନାହିଁ । କାରିଗରମାନେ ବହୁ ଚେଷ୍ଟା କଲେ, ମାତ୍ର ଆଦୌ କୃତକାର୍ଯ୍ୟ ହେଲେ ନାହିଁ । ଏହା ଶୁଣି ରାଜା ଆଦେଶ ଦେଲେ ଯେ ନିର୍ଦ୍ଦିଷ୍ଟ ଦିନ ମଧ୍ୟରେ ଦେଉଳ ମୁଣ୍ଡି ନ ମରିବ, ତେବେ ସବୁ କାରିଗରଙ୍କ ମୁଣ୍ଡ କଟା ହେବ । ଏଥିରେ ମହାଚିନ୍ତା ପଡ଼ିଗଲା । ଜଣେ କାରିଗର ୧୨ ବର୍ଷ ହେଲା ଘର ଛାଡ଼ି ଆସି ଏଠାରେ କାମ କରୁଥିଲା । ଘରୁ ଆସିବା ବେଳେ ତାର ସ୍ତ୍ରୀ ଗର୍ଭବତୀ ଥିଲା । ପୁଅଟିଏ ଜନ୍ମ ହେଲା; ବାପ ଧର୍ମଦେବତା ଅର୍ଥାତ ସୂର୍ଯ୍ୟଙ୍କ ମନ୍ଦିର ତିଆର

କହିବାକୁ ଆସିଥିବାରୁ ମା ପିଲାଟିର ନାମ ଦେଲେ 'ଧର୍ମପଦ' । ଧର୍ମପଦ କ୍ରମେ ବଡ଼ ହୋଇ ନାନା ପାଠ ପଢ଼ିଲା ଓ ଘରେ ଥିବା ଶିଳ୍ପଶାସ୍ତ୍ର ସବୁ ନିଜେ ନିଜେ ପଢ଼ି ସବୁ ବୁଝିଗଲା । ଦିନେ ଗୃହାଳୀରେ ଆଉ ଜଣେ ପିଲା ପାଠରେ ତା ପାଖରେ ହାରିଯାଇ ତାକୁ ଅଣବାବୁଆ ବୋଲି ଗାଳି ଦେବାରୁ ଧର୍ମାକୁ ଭାରି ବାଧିଲା । ସେ ମାଆଙ୍କ ଅନୁମତି ନେଇ ବାପାଙ୍କୁ ଖୋଜିବାକୁ ଏଠି କୋଣାର୍କକୁ ଆସିଲା । ବାପ ତାକୁ ଜନ୍ମରୁ ଦେଖି ନ ଥିଲେ । ପରେ ପରିଚୟ ହେଲାରୁ ବାପା କହିଲେ, 'ଧନ, କାଲି ଆମ, ସମସ୍ତଙ୍କ ମୁଣ୍ଡ କାଟ ହେବ, ମରିବା ଆଗରୁ ତୋତେ ଯାହା ଠିକଏ ଦେଖିଲି ।' ପରେ ଧର୍ମା ସବୁ କଥା ବୁଝି ନିଜ ବୁଦ୍ଧିବଳରେ ସେହି ରାତି ମଧ୍ୟରେ ଦେଉଳ ମୁଣ୍ଡି ମାରିଦେଲା । ରାଜା ଶୁଣିଲେ କାଳେ ଅନ୍ୟ କାରିଗରଙ୍କୁ ନିନ୍ଦା କରି ମାରିଦେବେ ସେଥିପାଇଁ ଧର୍ମପଦ ବାପାଙ୍କ ଅନୁମତି ନେଇ ସେହିଦିନ ପାହାନ୍ତିଆରେ ଦେଉଳ ଉପରୁ ଏଠାରେ ଆଗେ ବହୁଥିବା ଚନ୍ଦ୍ରଭାଗା ନଦୀକୁ ଡେଇଁ ପଡ଼ି ପ୍ରାଣତ୍ୟାଗ କରିଦେଲା । ଆରଦିନ ଦେଉଳ ମୁଣ୍ଡି ମରିବା ଦେଖି ରାଜା ଭାରି ଖୁସି ହେଲେ ।" ଏହି ସବୁ କଥା ଶୁଣି ମୋ ମନରେ ହେଲା, ବାପା ଅକାରଣରେ ଅମ୍ଭଙ୍କୁ ଏଠାକୁ ଆଣି ନ ଥିଲେ । ସେଠାରେ ଯାହା ଦେଖି ଆସିଛୁ ମରିବାଯାଏ ତାହା ଭୁଲିବ ନାହିଁ ।

କେହୁ କେହୁ କହନ୍ତି କଳାପାହାଡ଼ ଏ ଦେଉଳ ଭାଙ୍ଗି ଦେଇଥିଲା ।

ସେଠାରୁ ପୁରୀବାଟେ ଫେରିଯାଇ ଅମ୍ଭମାନେ ୧୫ ଦିନ ପରେ ସମ୍ବଲପୁରରେ ପହଞ୍ଚିଲୁଁ ।

## ପ୍ରଶ୍ନ

୧ । କୋଣାର୍କ ମନ୍ଦିରରେ ଶିଳ୍ପର ବିଶେଷତ୍ୱ କଅଣ ?

୨ । ବିଦେଶୀୟମାନେ କୋଣାର୍କ ଶିଳ୍ପକଳା ଦେଖି ପ୍ରାଚୀନ କାଳର ଓଡ଼ିଆ ଜାତିଙ୍କ ସମ୍ବନ୍ଧରେ କି ଧାରଣା କରୁଥିବେ ?

୩ । ଦେଉଳ ଉପରୁ ନଈକୁ ଡେଇଁ ପଡ଼ି ପ୍ରାଣତ୍ୟାଗ କରିବାଦ୍ୱାରା ଧର୍ମପଦର କେଉଁ ଗୁଣ ପ୍ରକାଶିତ ହେଉଅଛି ?

---

Dasharathi Das, at the D. Press Cuttaok— 1948